# ମୋ ଭଳି ସିନା ମୁଁ



ବିନୋଦ କାନୁନ୍‌ଗୋ

*Specially prepared for the children of Orissa as a low priced edition. Approved by the Govt. of Orissa for distribution under the Operation Blackboard Scheme.*

# ମୋ ଭଳି ସିନା ମୁଁ

# MO BHALI SINA MU

ଜ୍ଞାନମଣ୍ଡଳ ଫାଉଣ୍ଡେସନ୍, ବାରବାଟୀ ଷ୍ଟାଡ଼ିୟମ୍,
କଟକ-୭୫୩୦୦୫ଙ୍କ ଦ୍ୱାରା ପ୍ରକାଶିତ ଓ ମୁଦ୍ରିତ ।

Publised & Printed by Jnanmandal Foundation,
Barabati Stadium, Cuttack-753 005

ମୂଲ୍ୟ : 2.50 p

# ମୋର ଏଇଟି ଶେଷ ଗପ

ରଜ ସଂକ୍ରାନ୍ତି ଆଉ ଆଠ ଦିନ ଥାଏ । ଖରାଦିନର ତେଜ କମି ଆସିଲାଣି । ଏଣିକି ମେଘ ଘୋରା ଘୋରି କରୁଛି । ଦି'ଦିନ ତଳେ ଭଲ ଅସରାଏ ବର୍ଷା ହୋଇ ଯାଇଛି । କୃଷୀଙ୍କର ଆନନ୍ଦ । ଫସଲ ବୁଣା ବୁଣିରେ ଲାଗିପଡ଼ିଲେଣି । ବହୁ ଯୁଗରୁ ତ ଗୋଟାଏ କଥା ରହିଆସିଛି —ରଜ ତିନ ଦିନ ହଳ ହେବ ନାହିଁ । ବଳଦ ବିଶ୍ରାମ କରିବେ । ହଳିଆମାନେ ମଧ୍ୟ କୃଷ କାମ ନକରି ମଉଜ ମଜଲିସ୍ କରିବେ, ବନ୍ଧୁବାନ୍ଧବଙ୍କ ଘରକୁ ଯାଇ ସେମାନଙ୍କୁ ସଙ୍ଗୋଳିବେ । ପିଲାମାନଙ୍କର ବାଗୁଡ଼ି ଖେଳ ପାଇଁ ନାଗରବାଲାକୁ ବନ୍ଧନା ଦିଆସରିଲାଣି । ଏବେ ଅନେକ ଗାଁରେ ଥିଏଟର ହେଉଛି । ଥିଏଟର ଖୁନ୍ଦା ଅସୁଲବେଳେ ପିଲାଙ୍କର କେତେ ଅଭିମାନ—କେତେ ରାଗ ରୋଷ ।

ହରିବାବୁ ତାଙ୍କ ଗ୍ରେଟିଆ ବଗିଚାଟିରେ ବୁଲୁଥାନ୍ତି । ଯେଉଁ ନୂଆ କାଗେଜି ଗଛ ଆଣି ତିନି ବର୍ଷ ତଳେ ଲଗାଇଥିଲେ ସେଥିରେ ଗୁଡ଼ିଏ ଲେମ୍ବୁ ଫଳିଛି । ସବୁଗୁଡ଼ିକ ଗୋଲ ଗୋଲ—ବଡ଼ ବଡ଼ । ଦେଖିଦେଲେ ପେଟ ପୂରିଯାଉଛି । ସେଥିରୁ ଯେଉଁଟି ହଳଦିଆ ପଡ଼ିଯାଇଛି ସେଇଟିରେ ଟିକିଏ ହାତ ମାରିଲେ । ଠାକୁର ବୋଲି ଯେଉଁ ପିଲାଟି ତାଙ୍କ ସାଙ୍ଗରେ ଘୁରିବୁଲୁଥାଏ, ସେ କହିଲା—"କାଲି ମୁଁ ଶୁଙ୍ଘିଥିଲି, କାଗେଜିରୁ ବଡ଼ ସୁନ୍ଦର ବାସନା ବାହାରୁଥାଏ ।" ହରିବାବୁ ନାକ ଲଗାଇଦେଇ କହିଲେ—"ସତରେ ତ ବାସୁଛି; ଆଜି ଖାଇଲାବେଳକୁ ନେଇଯିବୁ ।"

ଟିକଏ ବୁଲିପଡ଼ ଦେଖନ୍ତୁ ସେ ଗୋଟିଏ ଖୁବ୍ ବଡ଼ ସପୁରି । କେରଳ ରାଜ୍ୟରେ ନଡ଼ିଆ ତ ବହୁତ ଫଳେ—ସପୁରି ମଧ୍ୟ ଖୁବ୍ ବଡ଼ ବଡ଼ ଓ ମିଠା ହୁଏ ।

ସେହି ରାଜ୍ୟରୁ ଯୋସେଫ୍ ଆସି କଟକରେ ଭଲିବଲ ଖେଳ ଶିଖାଉଥାନ୍ତି । ସେ ହରିବାବୁଙ୍କ ପାଇଁ ଆଠଟି ସପୁରି ଗଛ ଆଣିଥିଲେ । ସେହି ଗଛରେ ଫଳିଛି । ପାଚିବାକୁ ଟିକେ ଡେରି ଅଛି । ଆମ ମାଟିରେ ଭଲ ହେବନାହିଁ ବୋଲି ଡର ଥିଲା; କିନ୍ତୁ ବେଶ୍ ବଡ଼ ବଡ଼ ହୋଇଛି ତ ! ମିଠା ହେଉଛି କି ନାହିଁ ପାଚିଲେ ଜଣାପଡ଼ିବ । ସେହି ବଗିଚାରେ ବଡ଼ ବଡ଼ ପାଚିଲା କଦଳୀ କାନ୍ଧି ସବୁ ଝୁଲୁଛି । ଗୋଟାଏ କାନ୍ଧିରେ ତିନି ଶହରୁ ଉପର କଦଳୀ । ଭାଙ୍ଗିପଡ଼ିବ ବୋଲି ମୂଷ ଗୋଟାଏ ବାଉଁଶ ପୋତି ତା' ଦେହରେ ଗଛଟିକୁ ବାନ୍ଧି ଦେଇଥିଲା । ଅପତ୍ତି ମନକୁ ପାଇଲା ନାହିଁ । ସେ ଆଉ ଦୁଇଖଣ୍ଡ ବାଉଁଶରେ କେନା ଭିଳି କରି ଡେରି ଦେଇଛି । ଯେଉଁ ଗୁଆ ଓ ନଡ଼ିଆ ଗଛ ଦୁଇ ବର୍ଷ ତଳେ ଲାଗିଥିଲା ସେଗୁଡ଼ିକ ବେଶ୍ ବଢ଼ୁଛି ଦେଖି ହରିବାବୁଙ୍କ ମନ ଖୁସି ହୋଇଯାଉଥାଏ ।

ଖବର ଆସିଲା—ପିଲାମାନେ ଆସିଗଲେଣି । ସେ ଯାଇ ଦେଖନ୍ତି ଯେ ଗାଁର ତିରିଶ ଚାଳିଶ ପିଲା ତାଙ୍କ ବଡ଼ ଅଗଣାରେ ବସିଛନ୍ତି । ହରି ବାବୁଙ୍କର ଜନ୍ମଦିନ ! ପିଲାଙ୍କର ସିନା ଜନ୍ମଦିନ ହୁଏ—ସେମାନେ ନୂଆ ଲୁଗା ପିନ୍ଧନ୍ତି—ପିଠାପଣା ହୋଇ ବାଣ୍ଟକୁଣ୍ଟ ହୁଏ—ବୁଢ଼ାଙ୍କର ପୁଣି ଜନ୍ମଦିନ କାହିଁକି ? ବୁଝୁ ବୁଝୁ ଜଣାପଡ଼ିଲା ତାଙ୍କର ପଞ୍ଚଷଠି ବର୍ଷ ପୂରିଯାଉଛି । ଗୋଟିଏ ବର୍ଷ ପାଇଁ ସେ ଗାଁ ଛାଡ଼ିବେ; କଅଣ ଗୋଟାଏ କାମ କରିବାକୁ ଯିବେ । ଏଣେ କଥାରେ ଅଛି କଲିଷଠା ଷାଠିଏ । ଷାଠିଏ ବର୍ଷ ପୂରିଗଲେ ଲୋକକୁ ବୁଢ଼ା ବୋଲି କୁହାଯାଏ । ପଅଁଷଠି ବର୍ଷରେ ଘାଟି ଥାଏ । ସବୁଆଡୁ ଆବୁଆଡୁ ବଗିଚାର ଗୋଟାଏ ଖିଆମିଆର ବନ୍ଦୋବସ୍ତ କରିଦିଆଯାଇଛି ।

ସେ କହିଲେ— "ଦେଖ, ଏଇଟି ହେଉଛି ମୋର ତୁମମାନଙ୍କୁ ଶେଷ ଗପ । ଗଲା ପାଞ୍ଚ ଛ' ବର୍ଷ ଭିତରେ ଓଡ଼ିଶା ସାରା ବୁଲି ପିଲାଙ୍କ

ମେଳରେ କଥା କହୁଆସୁଛୁ । ମୋର ସବୁ ଯେପରି କ ମାନସିକ ଥିଲା ତିନଶହ ପଇଁଷଠିଟି ଗପ କହିଦେବ । ଏ ଦୁନିଆର ଯେତେ ଯେତେ କଥା ପିଲାମାନେ ଜାଣିବା ଦରକାର, ସବୁତକ ରହିଯିବ ସେସବୁ କାହାଣୀ ଭିତରେ ! ତିନଶହ ଚଉଷଠିଟି କହିସାରିଲଣି । ଆଜ ପରେ ସେ କାମ ବନ୍ଦ ହୋଇଯିବ । ମୁଁ ଆଉ ଗୋଟାଏ ବଡ଼ କାମରେ ମୁଣ୍ଡ ପୂରାଇଛୁ । ଦୁଇଟି ବର୍ଷ ଲାଗିଲେ ସେଇଟି ମଧ୍ୟ ଶେଷ ହୋଇଯିବ । ତେଣିକ ମୁଁ ଦେଶର ଗୃହଆଡ଼େ ବୁଲିବ । ଏମିତି ହେଉ ହେଉ ଏ ସଂସାରରୁ ବିଦାୟ ନେବା ବେଳ ଆସିଯିବ ।”

## ବଡ଼ ନୁହେଁ ଯେ—ବଡ଼ଙ୍କ କଥା

ଭଗବାନଙ୍କୁ ହରବାବୁ ନେଉଳଭାଇ ବୋଲି କୁହନ୍ତି । ସେ ଗୃହ-ଆଡ଼କୁ ଗଳିଯାଇ କେଉଁଠି କଅଣ ହେଉଛି ଖବର ନେଇଆସେ । ଏଥିଭିତରେ ସେ ଗୃହିଗଲଣି ଯେଉଁଠି ରନ୍ଧାବଢ଼ା ହେଉଛି ସେଇଠିକି । ତେଣୁ ଫେର କହିପକାଇଲ—“ଟିକିଏ ଡେରି ଅଛି—ଭଲ ହୋଇଛି ଆମେ ଗୋଟାଏ ବଢ଼ି ଗପ ଶୁଣିବା ।” ହରି ଜେଜେ କହିଲେ—“ବଢ଼ି ନୁହେଁ ଯେ, ଆଜି ବଡ଼ଙ୍କ ବିଷୟରେ କଥାଟିଏ କହିବ । କାହାଣୀ ଶୁଣାଇବାର ଆଜି ଯେତେବେଳେ ଶେଷ ଥାକ ଦିନ, ଏ ସଂସାରରେ ସବୁଠାରୁ ଯେଉଁଟି ବଡ଼ ଜୀବ ତାହାର ବିଷୟରେ ଶୁଣ । ଉଚ୍ଛନ୍ନ ହୁଅ ନାହିଁ । ଆରମ୍ଭ କରିବ ଟିକିଏ ପଛରୁ ।”

ଜୀବଜନ୍ତୁ ରହିବା ପାଇଁ ପୃଥିବୀରେ ପାଣି ପବନ ମାଟି ଯେତେ-ବେଳେ ଉପଯୁକ୍ତ ହୋଇଗଲା ପ୍ରକୃତି ଲାଗିଗଲା ଜୀବନ ତିଆରି କରିବାରେ । ପ୍ରଥମେ ଯେଉଁଗୁଡ଼ିକ ତିଆରି ହେଲେ ସେଗୁଡ଼ିକ ଏତେ ଛୋଟ ଯେ ଆଖିକୁ ଦେଖାଯିବେ ନାହିଁ । କ୍ରମେ ଟିକିଏ ଟିକିଏ ବଡ଼ ଜୀବ ଜନ୍ମନେଲେ । ଗଛଲତା, କୀଟ-ପତଙ୍ଗ, ନାନା ଜାତିର ଜୀବ ଶୋଭା ପାଇଲେ । କିନ୍ତୁ ତା’ ମନ ମୋଟେ ମାନୁନଥାଏ । ଏଡ଼େ ବଡ଼ ପୃଥିବୀରେ ବୁଲିବେ କେବଳ ଏଇ ଛୋଟ ଛୋଟ ପ୍ରାଣୀ ? ବସୁଧାମାତା କୋଳଟା ମୋଟେ ଶୋଭା ପାଉନାହିଁ ।

# ଏଇ ସବୁ କେଡ଼େ ବଡ଼ !

ସେ ତା' ହାତସଫାଇ ଦେଖାଇଦେଲେ । ଧନେ ଦେଖିଲେବେଳକୁ ପୃଥିବୀରେ ବୁଲୁଛନ୍ତି ଅତି ବଡ଼ ବଡ଼ ଜୀବ । ତୁମେସବୁ ହାତୀ ଦେଖିଚ । ଭୂଇଁ ଉପରେ ଯେତେ ଜୀବ ବୁଲୁଛନ୍ତି ସେମାନଙ୍କ ଭିତରେ ସେହିଟି ହେଉଛି ସବୁଠାରୁ ବଡ଼ । କିନ୍ତୁ ସେ ଯେଉଁ ଜୀବ—ସେଗୁଡ଼ିକ ହାତୀଠାରୁ ମଧ୍ୟ ବଡ଼ ।

ପିଲାମାନେ ଆଖି ଏଡ଼େ ଏଡ଼େ କରି ଚାହିଁଲେଣି—ହାତୀଠାରୁ ପୁଣି ବଡ଼ ଜୀବ ଅଛନ୍ତି ! ସେ ଟିକିଏ ହସି କହିଲେ—"ଏତିକିବେଳୁ ତ ଏଡ଼େ ଏଡ଼େ ଆଖି କଲଣି । ଶେଷ ବେଳକୁ ତ ଆଉ କିଛି ଦେଖିପାରିବ ନାହିଁ ! ସେଥିରୁ ଗୋଟିକର ଲମ୍ବ ଥିଲା ପଞ୍ଚସ୍ତରୀ ଫୁଟ—ଏବକାର ହିସାବରେ ପ୍ରାୟ ତେଇଶ ମିଟର । ତୁମେମାନେ ସହଜରେ ଅନୁମାନ କରିପାରିବ ନାହିଁ—ପଞ୍ଚସ୍ତରୀ ଫୁଟ କେତେ ଲମ୍ବ ହୋଇଥିବ ବୋଲି । ଏହି ଯେଉଁ ଅଗଣା ବା ଦୁଆରରେ ବସିଛ ସେହିଟିର ଲମ୍ବ ପଚିଶ ଫୁଟ । ଏହାର ତିନି ଗୁଣ ଲମ୍ବ କେତେ ? ସେ ଥିଲା ପନ୍ଦର ଫୁଟ ଉଚ୍ଚ । ତା' ଓଜନ ଥିଲା ୩୫ରୁ ୪୦ ଟନ୍—ମହଣ ହିସାବ ଧରିଲେ ହଜାରେ କି ଏଗାରଶହ । ଗୋଟିଏ ହାତୀର ଓଜନ ପାଞ୍ଚ ଟନ୍ । ତାହା ତୁଳନାରେ ଏଇଟି କେତେ ବେଶୀ ଭାବ ?"

ବାବୁଲି କ'ଣ ହିସାବ କରିପକାଇ କହିଲା—"ସେ ଜୀବଟାର ଓଜନ କଣ ୪୦୦୦ କେଜି ? ଚାଳିଶ କୁଇଣ୍ଟାଲ ?"

ହରିବାବୁ—"ସେଥିରେ ଆଉ କ'ଣ ଭୁଲ ଅଛି ? ଅଙ୍କକୁ କ'ଣ କେହି ଭୁଲ୍ ବୋଲି କହିପାରିବ ? ଆଚ୍ଛା ଗୋଟାଏ ହିସାବ କରୁନୁ ? ହାତୀର ଏହି ମୋଟ ଦେହଟିକୁ ବଞ୍ଚାଇବା ପାଇଁ ସେ ଦିନକୁ ଖାଉଛି ପାଞ୍ଚଶହ କେଜି ଘାସପତ୍ର ଓ ଦଶ କେଜି ଦାନା । ଏହି ଜୀବ କେତେ ଖାଇଲେ ତା' ପେଟ ପୂରୁଥିବ ମନେ ମନେ ହିସାବ କର ! ଦେହ ତୁଳନାରେ ତା' ମୁଣ୍ଡଟି ଖୁବ୍ ଛୋଟ । ଦାନ୍ତଗୁଡ଼ା ଦୁର୍ବଳ, ପାଣିପାଟ

ନଦୀ ନିକଟରେ ରହି ଲମ୍ବା ବେକକୁ ବୁଲାଇ ବୁଲାଇ ସେ ପାଣି ଗଛଲତା ଦଳ ପ୍ରଭୃତି ଖାଉଥିଲା । ତା' ନାଁ ଦିଆଯାଇଛି "ବଜ୍ରଗୋଧୀ ବା ବଜ୍ର-ସରୀସୃପ ।"

## ଆଉ ଗୋଟିଏ କେଡ଼େ ଭୀଷଣ !

ଆଉ ଗୋଟିକୁ କୁହାଯାଏ "ଅତ୍ୟାଗ୍ରହୀ ଗୋଧୀ ବା ସରୀସୃପ" । ଲମ୍ବଟା ହେଉଛି ପଚିଶ ଫୁଟରୁ କିଛି କମ୍—ଏହି ଅଗଣାର ପ୍ରାୟ ଦୁଇଗୁଣ ଲମ୍ବା । କୋଡ଼ିଏ ଫୁଟ ଉଚ୍ଚ ଏହି ଜୀବର ମୁଣ୍ଡଟା ଚାରି ଫୁଟରୁ ଅଧିକ ଲମ୍ବ । ପାଟିଟା ମେଲା ହେଲେ ଦୁଇ ହାତ ଓସାର ହୋଇଯିବ । ତିନି ଇଞ୍ଚରୁ ଛ' ଇଞ୍ଚ ଲମ୍ବ ଦାନ୍ତର ଦୁଇପାଖରେ ଧାର । ସେ ପଛ ଗୋଡ଼ରେ ଚାଲେ । ଆଗ ଗୋଡ଼ ଦୁଇଟି ଉପରକୁ ଟେକାହେଲା ଭଳି ହୋଇଥାଏ । ସେଥିରେ ରହିଥାଏ ଲମ୍ବା ଲମ୍ବା ମଜବୁତ ନଖ । ଶିକାରକୁ ଧରି ଦାନ୍ତରେ ଚିରିପକାଏ ।

## କାଠଫାଳିଆ ଗୋଧୀ

ଆଉ ଗୋଟିକୁ କୁହାଯାଏ "କାଠଫାଳିଆ ଗୋଧୀ" । ପଚିଶ ତିରିଶ ଫୁଟ ଲମ୍ବର ଦେହ—ଦଶ ଫୁଟ ଉଚ୍ଚ । ପଛ ଗୋଡ଼ଗୁଡ଼ାକ ସାତ ଫୁଟ ଉଚ୍ଚର । ମୁଣ୍ଡ ଦୁଇଟି ଭଳି ବଡ଼ ନହେଲେ ମଧ୍ୟ ଦେଖିଲେ ଡର ମାଡ଼ିବ । ତା ଦେହରେ ଦୁଇଧାଡ଼ି ଫଳକ ବା ଫାଳିଆ ରହିଛି । ଲାଙ୍ଗୁଳର ଶେଷ ଆଡ଼କୁ ଲମ୍ବା ଲମ୍ବା ଚାରି ଯୋଡ଼ା ଗୋଜ ବା କଣ୍ଟା ରହିଛି । ପିଠିର ଫାଳଗୁଡ଼ାକ ଦୁଇ ଫୁଟ ଲମ୍ବ, ଦୁଇ ଫୁଟ ଉଚ୍ଚ ଓ ଇଞ୍ଚେ ମୋଟା । ଲାଙ୍ଗୁଳ କଣ୍ଟାର ଲମ୍ବ ଦୁଇ ଫୁଟ ।

## "ଉପରମୁହାଁ ସରୀସୃପ"

ଆଉ ଗୋଟାଏ ଜାତିର ଜୀବକୁ କୁହାଯାଏ 'ଉପରମୁହାଁ' । ସେଇଟି ଠିଆ ହୋଇଥିଲେ ତିରିଶ ଫୁଟ ଉଚ୍ଚ ହୋଇଯିବ—ପାଞ୍ଚଜଣ ଡେଙ୍ଗା ଡେଙ୍ଗା ଲୋକ ଉପରକୁ ଉପରକୁ ଠିଆହେଲେ ସେତିକି ଉଚ୍ଚ ।



[ "କାଠଫାଳିଆ ଗୋଧି" ବା ଫଳକ-ସରୀସୃପ ]

ପାଣି ମାଟି ଗୃହଆଡ଼େ ବୁଲି ଖାଦ୍ୟ ସଂଗ୍ରହ କରୁଥିଲା । ପାଣିରେ ବୁଲିବ ବୋଲି ତାକୁ ସେଇଭଳି ତିଆରି କରାଯାଇଥିଲା । ସେଇଟି ହେଉଛି ହଂସ-ପାଦିଆ । ନାକକୁ ଘେରି ଏମିତି ହାଡ଼ ଅଛି ଯେ ମୁଣ୍ଡ ଦେହରେ ଗୋଟାଏ ଶିଙ୍ଗ ରହିଛି ବୋଲି ଜଣାପଡ଼ିବ । ନାକପୁଡ଼ାର ପବନ ସେଇ ବାଟେ ବାହାରେ । ଦାନ୍ତଗୁଡିକ ଅତି ବିଚିତ୍ର ପ୍ରକାରରେ ଖଞ୍ଜାଯାଇଛି ।

ଆଉ ଗୋଟିଏ ଯେଉଁ ଜାତିର ଥିଲେ ସେମାନଙ୍କ ମୁଣ୍ଡଉପରେ ଶିଙ୍ଗ ଥିଲା । ଦେହଟି କୋଡ଼ିଏରୁ ପଚିଶ ଫୁଟ ହେଲେ ମଧ୍ୟ ଅନ୍ୟମାନଙ୍କ ତୁଳନାରେ ଏହାର ମୁଣ୍ଡ ବଡ଼ । ଏମିତିକି ଦେହର ତିନିଭାଗରୁ ଭାଗେ ହେଉଛି ମୁଣ୍ଡ ନାକ ଓ ମୁଣ୍ଡ ଉପରୁ ଗୋଟାଏ ଦୁଇଟା ବା ତିନିଟା ଶିଙ୍ଗ ବାହାରିଥାଏ ।

"ବଜରକାପ୍ରିଆ"ଙ୍କ ଦେହରେ ହାଡକାଡ ସବୁ ଖଞ୍ଜାଯାଇ-ଥିଲା । ଦେଖିବାକୁ ଏଗୁଡ଼ିକ ବେଶ୍ ବଡ—କୋଡ଼ିଏ ଫୁଟ ହେବ ।

## ସେମାନେ କେଉଁ ଦେଶରେ ରହନ୍ତି ?

ଆଉ ଗୋଟିଏ ଜାତିର ବଡ ଜୀବ କଥା କହିବାକୁ ଆରମ୍ଭ କଲା ବେଳକୁ ଜାପୁ ପଚାରିଲା—"ସେ ସବୁ ଜୀବ କେଉଁ ଦେଶରେ ଅଛନ୍ତି ?"

ହରିବାବୁ ଟିକିଏ ଥମିଗଲେ । କିଛି ସମୟ କଅଣ ଭାବିଲେ—ସତେ ଯେପରିକି ଗୁଣୁଗୁଣୁ ହେଉଛନ୍ତି । ଆରମ୍ଭ କଲେ—ସେ ସବୁ ଜୀବ ଆଉ ନାହାନ୍ତି । କାହିଁକି ନାହାନ୍ତି କହିବସିଲେ ରାତି ପାହିଯିବ । ଅନୁମାନରୁ କାରଣ ବୋଲି ଯାହା କୁହାଯାଉଛି ।

ତାହା ଯେ କେତେଦୂର ଠିକ୍ କିଏ ଜାଣିଛି ? ସେମାନେ ଯେଉଁ ଯୁଗରେ ଥିଲେ ମନୁଷ୍ୟର ଜନ୍ମ ସେତେବେଳକୁ ହୋଇନଥିଲା । ମନୁଷ୍ୟ ତ ଅଠର କୋଡ଼ିଏ ଲକ୍ଷ ବର୍ଷତଳେ—ବା ଟିକିଏ ତା ଆଗରୁ ବା ପରେ—ପୃଥିବୀରେ ପ୍ରଥମେ ପାଦଦେଲା । ଏହି ଜୀବମାନେ ବସୁଧାମାତା କୋଳରେ ବୁଲୁଥିଲେ କୋଟି କୋଟି ବର୍ଷତଳେ । ପଥରଦେହରେ ଯେଉଁସବୁ ଚିହ୍ନ



[ ବନ୍ଦ୍ର-ସରୀସୃପ ]



[ ଉପରମ୍ଭଦା 'ସରୀସୃପ' ]

ବା ପ୍ରମାଣ ରହିଛି ସେଇଥିରୁ ଏମାନଙ୍କ ବିଷୟରେ ମଣିଷ ଜାଣିପାରୁଛି । ସେମିତି ଜାଣିବା ବୁଦ୍ଧି ମଧ୍ୟ ମନୁଷ୍ୟର ନଥିଲା । ଅଳ୍ପ କେତେବର୍ଷ ହେଲା ନୂଆ ବୁଦ୍ଧି ହେବାରୁ ସେ ଏତେ କଥା କହିଦେଇପାରୁଛି ।

ଏତେ ବଡ଼ ବଡ଼ ଜୀବ କେମିତି ଲୋପ ହୋଇଗଲେ ସେ ବିଷୟରେ ନାନା ମୁନିଙ୍କର ନାନା ମତ । କୋଟି କୋଟି ବର୍ଷତଳେ ସେ ଯୁଗରେ ପୃଥିବୀଟା ଜାଣି ଗଢ଼ାହେଉଥିଲା—ଗଢ଼ା କାମ ସରିନଥିଲା । ପାଣି କେତେ ଅଞ୍ଚଳ ବ୍ୟାପି ରହିବ—ମାଟି କେତେ ରହିବ ସେ ବିଷୟରେ ବୋଧହୁଏ ଶେଷନିଷ୍ପତ୍ତି ହୋଇନଥାଏ । ପର୍ବତ ସବୁ ମୁଣ୍ଡଟେକି ଉଠୁଥାଆନ୍ତି । ଜଳବାୟୁରେ ଭଲ ଧରଣର ପରିବର୍ତ୍ତନ ହୋଇଥାଏ । ଉତ୍ତାପ କେତେ-ବେଳେ ଖୁବ୍ ବଢ଼ିଯାଉଥିଲା ତ ଖୁବ୍ କମିଯାଉଥିଲା । ମଣିଷ ଉଆରି ବେଳକୁ ପ୍ରକୃତି ଅନେକ କଥା ଜାଣିଗଲାଣି । ପ୍ରଚଣ୍ଡ ଖରାରେ ହେଉ ବା ପ୍ରବଳ ଶୀତ ଅଞ୍ଚଳରେ ହେଉ ମଣିଷ ରହିପାରୁଛି । ଆମ ଦେହ ଭିତରେ ତାପକୁ ସମତୁଲ କରି ରଖିବା ବ୍ୟବସ୍ଥା ଖଞ୍ଜାଯାଇଛି । ସେ ସବୁ ଜୀବଙ୍କ ଦେହରେ ସେଭଳି କିଛି କରାଯାଇ ନଥିଲା । ତାପର ଏହି ଘନ ଘନ ପରିବର୍ତ୍ତନ ସହିତ ସେମାନେ ହୁଏତ ଖାପ ଖୁଆଇ ନପାରି ବହୁସଂଖ୍ୟାରେ ମଲେ ।

ଅନ୍ୟ କେତେକଙ୍କର ମତ—ଜଳବାୟୁରେ ଯେତେବେଳେ ପରିବର୍ତ୍ତନ ହୋଇଥିବ, ପବନରେ ଜଳକଣାର ମାତ୍ରାରେ ଏପାଖ ସେପାଖ ହୋଇଥିବ, ପୃଥିବୀରେ ଯେଉଁସବୁ ପ୍ରକାରର ଉଦ୍ଭିଦ ଗଛଲତା ଥିଲେ ସେଥିରୁ କେତେକ ଲୋପ ପାଇଯାଇଥିବେ ତ ନୂଆ ଜାତିର ସବୁଜନ୍ମ ନେଇଥିବେ । ଏମାନେ ଯାହା ଖାଇବାରେ ଅଭ୍ୟାସ କରିଥିଲେ ସେ ଜାତିର ଗଛ ଲତା ଉଦ୍ଭିଦ ଯଥେଷ୍ଟ ପରିମାଣରେ ମିଳିନଥିବ । ତେଣୁ ଖାଦ୍ୟ ଅଭାବରେ ଲୋପ ପାଇଯାଇଥିବେ ।

ଆଉ କେହି କେହି କୁହନ୍ତି—ଉଦ୍ଭିଦ ଖାଇ ଯେଉଁସବୁ ସରୀସୃପ ବଞ୍ଚୁଥିଲେ ସେମାନଙ୍କ ସଂଖ୍ୟା ପ୍ରଥମେ କମିଯାଇଥିବ । ଯେଉଁ ଗୁଡ଼ିକ ମାଂସଭୋଜୀ—ଏହିମାନଙ୍କୁ ମାରି ଖାଉଥିଲେ ସେମାନେ କ୍ରମେ ଭୋକରେ

ମରିଥିବେ । ବଣରୁ ଯନ୍ତ ଦ୍ୱରଣ ମିରଗ ଠେକୁଆ ଇତ୍ୟାଦିଙ୍କ ସଂଖ୍ୟା କମିଯିବ ବାଘ ରହିଯିବେ ଉପୋକ-ଉପାସରେ । ସେ କ୍ଷେତ୍ରରେ ସେହିଭଳି ଦଶା ହୋଇଥିବ ।

## ସେଭଳି ଜୀବ ଆଉ ଜମା ନାହାନ୍ତି ?

ରେଣୁ ମନ ସତେ ଯେପରି ଖରାପ ହୋଇଯାଉଥାଏ । ପୃଥିବୀରୁ ଏତେ ବଡ ବଡ ଜୀବ ଲୋପ ହୋଇଗଲେ ! ସେ ବଡ଼ ପ୍ରାଣୀଙ୍କୁ ତ ମଣିଷ ଜାତି ଦେଖିପାରିଲା ନାହିଁ ?

ସେତେବେଳକୁ ଭଗବାନ ଥାଉ ଥରେ ଯାଇ ଦେଖି ଆସିଲେଣି ବୋଷେଇ କେତେଦୂରକୁ ଗଲାଣି । କେହି ନ ପଚାରୁଣୁ କହିଉଠିଲା "ସବୁ ସରିଲାଣି—ନଡିଆତରକାରୀଟା ବାକି ଅଛି ।" ତା' କଥା ଶୁଣି ସମସ୍ତେ ହସି ଉଠିଲେ । ସେ ରାଗିଯାଇ କହିଲା – "ତୁମେମାନେ କେହି ତ ଖାଇବା ପାଇଁ ଆସିନା – ମୁଁ ଏକା ଆସିଛି ? ଦେଖିଆସିଲେ କଅଣ ହେଲା ?"

'ଭଗବାନ କଥାଟା ସେଇଠି ରହୁ ବୋଲି' କହି ସେ ଆଗକୁ ବଢି କହିଲେ— ରେଣୁ ଯେଉଁକଥା ଉଠାଇଲା ସେଇଟି ହେଉଛି ମଂଜ ପ୍ରଶ୍ନ । ତାହାର ଉତ୍ତର ଶୁଣ ।

## ଆମର ତିନୋଟି ମା'

ଆମର ତିନୋଟି ମା' ଅଛନ୍ତି ବୋଲି ଧରିନିଅ । ଜଣେ ଆମକୁ ଜନମ ଦେଇଛି । ସେ ଆମକୁ ଏତେ ଯତ୍ନରେ ବଢାଏ କୁଢାଏ । ବସୁଧା ହେଲା ଆଉ ଗୋଟିଏ ମା' । ତା' କୋଳରେ ଆମେ ଜୀବନଟା କଟାଇ ଦେଉଛୁ । ମା' କ୍ଷୀର ଛାଡିଲା ପରେ ଯାହା କିଛି ଖାଉଛୁ ସେଇ ଦେଇଛି । ତାର ଉପରେ ଘରଦ୍ୱାର କରି ରହୁଛୁ । ତା' ଗୁଣ ଗାଇ ଗାଇ କବିମାନେ କୁହନ୍ତି "ଜନନୀ ଜନମଭୂମି ଆମ ପାଇଁ ସମାନ ।" କିନ୍ତୁ ଯେଉଁମାନେ ବିଜ୍ଞାନୀ, ସେମାନେ କୁହନ୍ତି, ଆଉ ଗୋଟିଏ ମାଆର ଗୁଣ ଗାଇଲେ ସରିବ ନାହିଁ । ତାହା ନାଁ "ପ୍ରକୃତି" । ପାଣି ମାଟି ଗଛପତ୍ର ଜୀବଜନ୍ତୁ ଯାହା କିଛି



[ ନିଜ ନିଜ ମଧ୍ୟରେ ଲଢ଼ି ଧ୍ୱଂସ ହୋଇଗଲେ ]



ଏଗୋଟିଏ ତିମି ସହିତ ୨୫ଟି ହାତୀ ବା ୧୫୦ଟି ବଳଦ ସମାନ ହେବେ ।

ଦେଖୁଛ ସବୁ ହେଉଛି ତାହାର ଦାନ । ସେ ଗୁଡ଼ିଏ ନିୟମ ବାନ୍ଧିଦେଇଛି । ସେହି ନିୟମ ଅନୁସାରେ ସଂସାର ଆତଯାତ ହେଉଛି ।

ସେହି ପ୍ରକୃତି ଯେତେବେଳେ ଦେଖିଲି ଯେ ସ୍ଥଳଭାଗରୁ—ମାଟି ଉପରୁ ବଡ଼ ବଡ଼ ଜୀବସବୁ ଲୋପ ହୋଇଯାଉଛନ୍ତି ତା' ମନ ଖରାପ ହୋଇଯାଇଥିବ । ଏତେ କୋଟି ବର୍ଷ ପରୀକ୍ଷା ପରେ ଏହିସବୁ ଜୀବଙ୍କୁ ସେ ତିଆରି କରିଥିଲି । ସେମାନଙ୍କର ଚିହ୍ନବର୍ଣ୍ଣ ସୁଦ୍ଧା ରହିବ ନାହିଁ ? ଏଇଟା କେମିତିକା କଥା ।

## ଗୋଟାଏ ଉପାୟ ପାଞ୍ଚିଲି

ତା' ମୁଣ୍ଡରେ ଗୋଟିଏ ଭାବନା ଖେଳିଥିବ । ଏଥିରୁ କେତୋଟି ଯଦି ସମୁଦ୍ର ଭିତରେ ରହିଯିବେ ଖାଦ୍ୟର ଅଭାବ ପଡ଼ିବ ନାହିଁ । ସାଗର ଭିତରେ ଅସରନ୍ତି ଖାଦ୍ୟ ରହିଛି । ଖାଇବେ, ବଢ଼ିବେ; କିନ୍ତୁ ମାଟି ଉପରେ ଚାଲିବା ପାଇଁ ଯେଉଁଭଳି ଶରୀର ତିଆରି ହୋଇଛି ପାଣିରେ ଚାଲିବା ପାଇଁ କ'ଣ ଠିକ୍ ସେହିଭଳି ଶରୀର କାମ ଦେବ ? ସେଥିରେ ପରିବର୍ତ୍ତନ କରିବାକୁହିଁ ପଡ଼ିବ ।

ଆଉରି ଗୋଟିଏ କଥା । ଏମାନଙ୍କଠାରେ ଯଦି କିଛି ନୂଆ ଢଙ୍ଗ ଥିବ, ଜଳଜୀବଙ୍କଠାରୁ, ମାଛଙ୍କଠାରୁ ଅଲଗା ହୋଇଥିବେ ତେବେ ଯିନା ପ୍ରକୃତିର ବାହାଦୁରୀ ଅଛି ବୋଲି କୁହାଯିବ । ଦିନେ ଏହି ପୃଥିବୀରେ ଗୋଟିଏ ଦୁଇଗୋଡ଼ିଆ ପ୍ରାଣୀ ବୁଲିବ । ତାହାର ନାମ ରହିବ ମନୁଷ୍ୟ । ପ୍ରଥମେ ପ୍ରଥମେ ସେ ଅନ୍ୟ ପ୍ରାଣୀଙ୍କ ଭଳି ଥିବ—ପରେ ତାହାର ବୁଦ୍ଧି ଏତେ ବଢ଼ିଯିବ ଯେ ସେ ଲକ୍ଷ ଲକ୍ଷ କୋଟି କୋଟି ବର୍ଷ ପୂର୍ବେ କଅଣ ହୋଇଥିବ ବୋଲି ଠିକ୍ ଠିକ୍ ଅନୁମାନ କରି ପାରିବ । ସେତେବେଳେ ସେ ହୁଏତ କହିବ—"ପ୍ରକୃତି ଦିନେ ଏତେ ବଡ଼ ବଡ଼ ଜୀବ ତିଆରି କରିଥିଲି ! ସବୁତକ ଲୋପ ହୋଇଗଲେ । କିଛିହେଲେ ନମୁନା ରଖିପାରିଲି ନାହିଁ !" ତା' ମନ ଏହିଭଳି ବ୍ୟାକୁଳ ହୋଇଉଠିଥିବାରୁ ସେ ଗୋଟିଏ ଉପାୟ ପାଞ୍ଚି ଅତିକାୟ ସ୍ଥଳଜୀବଙ୍କୁ ସମୁଦ୍ର ଭିତରକୁ ମୁହାଁଇଦେଲି ।

କ୍ରମେ ସେସବୁ ଜୀବଙ୍କ ଦେହରେ କେତେ ଗୁଡ଼ାଏ ପରିବର୍ତ୍ତନ ଆଣିଦେଲା । ସେହି ପରିବର୍ତ୍ତନ ଆଣିବାକୁ ଲକ୍ଷ ଲକ୍ଷ ବର୍ଷ ଲାଗିଥିବ । ଚାରିଗୋଡ଼ିଆ ମଣିଷ ଦୁ'ଗୋଡ଼ିଆ ହେବାକୁ ଯେମିତି ଏତେ କାଳ ଲାଗିଲା, ସମୁଦ୍ରରେ ରହିବା ପାଇଁ ବଡ଼ ଜୀବ ତିଆରି କରିବା ପାଇଁ ସେମିତି କେତେ ସହସ୍ର ଯୁଗ ଲାଗିଯାଇଥିବ ।

## ସେହିମାନଙ୍କୁ କହୁଛୁ ତିମି

ସମୁଦ୍ରରେ ଯେଉଁ ବିରାଟ ବିରାଟ ଜୀବ ରହିଛନ୍ତି ସେମାନଙ୍କୁ ଆମେ ତିମି ବୋଲି କହୁଛୁ । ସେମାନଙ୍କ ବିଷୟରେ ମନୁଷ୍ୟର ଯେତେବେଳେ ସେଭଳି କିଛି ଧାରଣା ନଥିଲା—ଦୂରରୁ ଦେଖିଲେ ଡର ଲାଗୁଥିଲା ହୋଇଯାଉଥିଲା ସେତେବେଳେ ସେଗୁଡ଼ିକୁ ମାଛ ବୋଲି କହୁଥିଲା । ପରେ ଅନେକ କଥା ଜାଣିଲା । ତାର ଭୁଲ ଧାରଣା ଦୂର ହୋଇଗଲା । ସମୁଦ୍ରରେ ପାଣିରେ ଚଳାଚଳ ହୁଅନ୍ତି—ଏତିକି ମେଳ ଛାଡ଼ିଦେଲେ, ମାଛ ଓ ତିମିଙ୍କ ଭିତରେ କିଛି ହେଲେ ତୁଳନା କରିହୁଏ ନପାରେ ।

## ପ୍ରଥମ କଥା—ନିଶ୍ୱାସ ନିଏ

ମାଛ ଥାଆନ୍ତି ପାଣି ଭିତରେ । ପବନ ଲୋଡ଼ା ନାହିଁ ନିଶ୍ୱାସ ନେବା ପାଇଁ । ପାଣି ଦେହରେ ଯେଉଁ ଅମ୍ଳଜାନ ମିଶିଛି ତାକୁ ରକ୍ତରେ ମିଶାଇବା ପାଇଁ ପାଟି ଦେହରେ ଗାଲି ଖଞ୍ଜିହୋଇଯାଇଛି । ମାଛକୁ ଯଦି ପାଣି ବାହାରକୁ ନେଇ ଆସିବ କିଛିକ୍ଷଣ ପରେ ମରିଯିବ । କାରଣ ପବନରୁ ନିଶ୍ୱାସ ନେବା ତା' ପକ୍ଷରେ ସମ୍ଭବ ନୁହେଁ । ତିମି କିନ୍ତୁ ପାଣିରୁ ଅମ୍ଳଜାନ ସଂଗ୍ରହ କରି ପାରିବ ନାହିଁ । ସେ ଆମରି ଭଳି ପବନରୁ ନିଶ୍ୱାସ ନେବ । ସେ ଉପରକୁ ଉଠେ । ଯାହାକୁ କୁହନ୍ତି ଚୁଡ଼ାଏ ପବନ ଦେହ ଭିତରେ ଭର୍ତ୍ତି କରିଦିଏ । ତାହା ପରେ ବୁଡ଼ିଲା ପାଣିରେ । ଚରିବୁଲି ଖାଇଲା । ଜୋରରେ ଏଣେତେଣେ ପହଁରିଲା । ଯେତେବେଳେ ପବନତକ ଶେଷ ହୋଇଗଲା ଉଠିଲା ଉପରକୁ । ଅଳିଆ ପବନତକ ବାହାର କରିଦେଲା; ପୁଣି ନେଲା ନୂଆ ପବନ । ଥରେ ବୁଡ଼ିଲେ ଅଧଘଣ୍ଟାରୁ ପଇଁତାଳିଶ ମିନିଟ୍

ପର୍ଯ୍ୟନ୍ତ ରହିପାଏ । କେହି କେହି କୁହନ୍ତି ଯେ ତା'ଠାରୁ ଅଧିକ ସମୟ-ଘଣ୍ଟାଏ ରହିପାରେ । ତୁମେମାନେ ସମସ୍ତେ ତ ବାଜି ମରାମରି ହୁଅ ପାଣି ଭିତରେ କିଏ କେତେ ସମୟ ବୁଡ଼ି ରହିପାରିବ । ଯିଏ ଅଧିକ ସମୟ ରହିଲା ତାହାର ବେଶୀ ବାହାଦୁରୀ । ଅନୁଭବ କରିଥିବ, "ନିଶ୍ୱାସ ଶେଷ ହୋଇଆସିଲା ବେଳକୁ" କେମିତି ଛଟପଟ ହେଲାଭଳି ହୋଇ ପାଣି ଉପରକୁ ଉଠିଆସ ।

## ଦ୍ୱିତୀୟଟି ହେଲା – ମା'କ୍ଷୀର ଖାଏ

ତିମି ଅଣ୍ଡା ଦିଏ ନାହିଁ—ଛୁଆ ଜନ୍ମ କରେ । ସେହି ଛୁଆ ଜନ୍ମ ହେଲାବେଳୁ ମା'-କ୍ଷୀର ଖାଇ ବଢେ । ତିମିପହ୍ଲା ଗାଈପହ୍ଲା ଭଳି ନୁହେଁ; ପେଟ ଚମଡ଼ା ଭିତରେ ଖୋଳରେ ରହିଲାପରି ରହିଛି । ଛୁଆ ତା' ଭିତରେ ମୁହଁ ପୂରାଇ ଖାଏ । ସେମିତି ନ ହୋଇଥିଲେ ଛୁଆ ପାଟିରେ ସମୁଦ୍ରର ଲୁଣିଆ ପାଣି ପଶିଯାଆନ୍ତା ।

## ମାଛ ଭଳି ଦେହ ପାଇଛି

ସେହି ଯୁଗର ବଜ୍ରଗୋଧି ବା ଅନ୍ୟ ଡାଇନୋସରଙ୍କ ଭଳି ଯଦି ତିମି ଦେହ ରହିଥାଆନ୍ତା ସେ ପାଣିରେ ପହଁରି ପାରନ୍ତା ନାହିଁ । ତେଣୁ ତା' ଦେହରେ ବହୁତ କିଛି ପରିବର୍ତ୍ତନ କରିଦିଆଯାଇଛି । ତା'ର ଯେଉଁ ଗୋଡ଼ ଥିଲା ତାହା କ୍ରମେ ଲୋପ ହୋଇଗଲା । ଦିନେ ଯେ ଗୋଡ଼ ଥିଲା ତାହାର ପ୍ରମାଣ ମିଳୁଛି ତା ହାଡରୁ । ହିକିଏ ଚିହ୍ନ ରହିଛି ସାକ୍ଷ୍ୟ ଦେବା ପାଇଁ ଯେ ତିମିର ପୂର୍ବପୁରୁଷ ଦିନେ ଭୂଇଁରେ ବୁଲୁଥିଲେ । ଦେହରେ ଲୋମ ନାହିଁ; ଥିଲେ ପାଣିରେ ବାଟ କାଟି ପହଁରିବା ଏତେ ସହଜ ହୁଅନ୍ତା ନାହିଁ । ଅତି ବେଗରେ ଗଲା ପାଣିକୁ ସେ ଦି'ଭାଗ କରି ଦେଇ ପାରୁନଥାନ୍ତା ।

## ଚର୍ବି ଗଦା ପିନ୍ଧିଛି

ଛୁଆ ଜନ୍ମକରି, କ୍ଷୀରଖିଆ ଓ ପବନରୁ ନିଶ୍ୱାସ ନେବା ଏତେ ବଡ଼ ଜୀବଟି ସବୁବେଳେ ପାଣିରେ ରହୁଥିବାରୁ ଥଣ୍ଡା ଧରିବ । ସେଥିରୁ

ତିମି ଜଳ-ଜୀବ ହେଲେ ମଧ୍ୟ ସ୍ଥଳଜୀବଙ୍କ ଭଳି ନିଶ୍ୱାସ-ପ୍ରଶ୍ୱାସ ନିଏ । କିଛି ପାଣି ଭିତରେ ରହିଲା ଭିତରେ ଛାତି-ପବନରୁ ଅମ୍ଳଜାନତକ ଶେଷ ହୋଇଯାଏ ଓ ଅଙ୍ଗାରକାମ୍ଳ ଭରିଯାଏ । ସେହି ଅଳିଆ ପବନକୁ ଛାତି ଭିତରୁ ବାହାର କରିଦେଇ ପୁଣି ବାହାର-ପବନ ପୂରାଇବା ପାଇଁ ସେ ମଝିରେ ମଝିରେ ଉପରକୁ ଉଠୁଥାଏ । ଦେହ ଭିତରେ ଉଷୁମ ପବନକୁ ବାହାରକୁ ଛାଡ଼ିଦେଲା ବେଳେ ଜଳକଣା ସୃଷ୍ଟି ହୋଇଯାଏ । ପୂର୍ବେ ଧାରଣା ଥିଲା ଯେ ତିମି ତା' ପାଟିବାଟେ ଉପରକୁ ପାଣି ଛାଡୁଛି ।

କିଛି ପରିମାଣରେ ରକ୍ଷା କରିବାପାଇଁ ତା ଚମଡ଼ା ତଳେ ମୋଟା ଚରବି ଗଚ୍ଛ ଖଞ୍ଜିଦିଆଯାଇଛି । ସେହି ଚରବି ଦିନେ ତା'ଶତ୍ରୁ ହେଲା । ମଣିଷ ତାହାର ଲୋଭରେ ତିମି ଶିକାର କଲା । ତାକୁ ନେଇ ସେ କେତେ କ'ଣ କାମରେ ଲଗାଇଲା ।

## ବଜ୍ରଗୋଧିଠାରୁ କ'ଣ ବଡ଼ ?

ଦୀମ ପଚାରିଲା—"ଯେଉଁ ବଜ୍ରଗୋଧି କଥା କହୁଥିଲ ତିମି କ'ଣ ତା'ଠାରୁ ବଡ ?"

ତାକୁ ଉତ୍ତର ଦେଲେ—ସେହି କଥା ତ କହିଆସୁଥିଲି । ପ୍ରକୃତି ମାଆର ତ ଜିଦ୍ ଲାଗିଥିଲା ସେ କେତେ ବଡ଼ ଜୀବ ତିଆରି କରିପାରେ ତାହାର ନମୁନା ରଖିଯିବା ପାଇଁ । ସମୁଦ୍ରରେ ତ ଏତେ ଖାଦ୍ୟ ଭରିରହିଛି । ତା' ହେଲେ ଗୋଟାଏ ବଡ଼ ଜୀବ ସେଥିରେ ଛାଡ଼ିଦେବାରେ ଅସୁବିଧା କଅଣ ? ସତକୁସତ ସେଇଆ କଲା । ଅତିକାୟ ସରୀସୃପ ବା ଡାଇନୋସରଠାରୁ ତିମି ହେଉଛି ଆକାରରେ ବଡ଼, ଓଜନରେ ମଧ୍ୟ ଅଧିକ ।

## ଆଉ କିଛି ଅଛପା ନାହିଁ

ସେହି ତିମିଙ୍କ କଥା ଆଜି ତୁମମାନଙ୍କୁ କହିବି । କିନ୍ତୁ ମୁଁ ଭଲ କରି ଜାଣିଛି ମନ ରହିଯିବଣି ରୋଷେଇ ଘରେ କଅଣ ହେଉଛି ତାହାଠିଠାରେ । ତେଣୁ ସଂକ୍ଷେପରେ କହିଯିବି । ମୁଁ ଜାଣିଛି ଯେତେ କହିଲେ ବି ତୁମମାନଙ୍କ ମନ ପୂରିବ ନାହିଁ । ସେମାନଙ୍କ ବିଷୟରେ ମନୁଷ୍ୟ ଜାତି ଅନେକ କଥା ଜାଣି ନଥିଲା; କିନ୍ତୁ ଏବେ ସେ ସବୁ ଆଉ ଅଛପା ହୋଇ ରହିନାହିଁ ।

## କେତେଡ଼ ବଡ଼ ହୋଇଥିବ ?

ଅଣ୍ଡାପିଆଣୀ ଜାତିର ତିମି ଅଛନ୍ତି । ସେମାନଙ୍କ ଭିତରୁ ଯେଉଁଟି ସବୁଠାରୁ ବଡ ତାହାର ଲମ୍ବ ୧୦୦ ଫୁଟ—ଏହି ଆଗଣାର ଦୁଇଗୁଣ ଲମ୍ବ—ପ୍ରାୟ ୩୧ ମିଟର ।

ନନ୍ଦବାବୁ ଆଉ ସମ୍ଭାଳି ହୋଇ ପାରିଲେ ନାହିଁ—"ସେଇଟା କଣ ଏତେ ବଡ଼ ଯେ ଲାଙ୍ଗୁଳଟା ଏହି ଉତ୍ତର ପଟ ପାଚେଶିରେ ରହିଲେ ମୁଣ୍ଡ ରହିଯିବ ଆମ କୋଠାଘର ତେଇଁ ଦଳପୋଖରୀ ସେ ମୁଣ୍ଡରେ ?"

ଠିକ୍ ସେଇଆ ବୋଲି ଉତ୍ତର ଦେଉ ଦେଉ ହରିଅଜା କହିଲେ—ଟିକିଏ ଦମ୍ଭ ଧରି ବସ । ଆହୁରି ଅଛି । ଗୋଟିଏ ଗୋଟିଏ ଏହାଠାରୁ ବଡ଼ ବୋଲି ଦେଖାଯାଇଛି । ତାହାର ଓଜନ ଶହେ ହଜାର ମହଣ । ଜଣେ ତେଙ୍ଗା ମୋଟା-ସୋଟା ଲୋକର ଓଜନ ହୁଏତ ଦୁଇ ମହଣ । ଦୁଇହଜାର ଲୋକଙ୍କ ସହିତ ଗୋଟିଏ ତିମି ସମାନ । ତୁମେ ସବୁ ତ ହାତୀ ଦେଖିଥିବ । ପଚିଶଟା ବଡ଼ ବଡ଼ ହାତୀଙ୍କୁ ନିକିତିରେ ଗୋଟାଏ ପାଖରେ ପକାଇଲେ ଆର ପାଖରେ ଗୋଟିଏ ତିମି ସମାନ ଓଜନ ଦେଖାଇବ ।

ଜାପାନ ଭଳି ଯେଉଁ ଦେଶର ଲୋକେ ତିମି ମାଂସ ଖାଆନ୍ତି, ସେମାନେ ହିସାବ କରି କୁହନ୍ତି ଏହିଭଳି ଗୋଟିଏ ତିମି ମାରିଦେଲେ ୧୪୦୦ ମହଣ ମାଂସ ମିଳିବ—କେଜି ହିସାବରେ ହେବ ଏଗାର ହଜାର ପାଞ୍ଚଶହ । ତାହା ଦେହରୁ ୨୨୫ ମହଣ ଚର୍ବି ବାହାରେ । ଏହାର ପାଟିଟା କେତେ ବଡ଼ ଟିକିଏ ଶୁଣ । ସେ ଯଦି ଆଁ କରିଦେବ ତା' ଭିତରେ ଗୋଟାଏ ଘୋଡ଼ା ଛୁଆ ହୋଇଯାଇ ଆହୁରି ସ୍ଥାନ ବଳିବ ।

## ତା ଛୁଆଟି କେତେ ହୋଇଥିବ ?

ଯେତିକି କହିଲେଣି ସେତିକି ହଜମ କରିବା ପାଇଁ ପିଲାମାନଙ୍କ ମନ ତିଆରି ଅଛି କି ବୋଲି ସନ୍ଦେହ ହେବାରୁ ହରିବାବୁ ଆଉ ନ କହି ଟିକିଏ ରହିଗଲେ । ନନ୍ଦବାବୁ ପଚାରିଦେଲେ ତା'ର କେତେ କେତେ ଛୁଆ ହେଉଥିବେ ?

ଏହି ଜୀବ ଥରକରେ ଗୋଟିଏ ଛୁଆ ଜନ୍ମ କରେ । ଜନ୍ମ ହେଲା ବେଳକୁ ସେଇଟି ହୋଇଥାଏ ପଚିଶ ଫୁଟ ଲମ୍ବ । ମୋଟମାଟ ଥାକୁଲି ଥାକିଲି ଏହି ଛୁଆର ଓଜନ ଦେଢ଼ଶହରୁ ଦୁଇଶହ ମହଣ !

ଏହି ଛବିଟିକୁ ଭଲ ଭାବରେ ଲକ୍ଷ୍ୟ କର । ଅତିକାୟ ସରୀସୃପଙ୍କ ଆକାର ସହିତ ତିମି ଓ ହାତୀଙ୍କୁ ମିଳାଇ ଦେଖ । ଏହିମାନଙ୍କ ତୁଳନାରେ ଆମେ ମନୁଷ୍ୟମାନେ କେଡ଼େ ଶ୍ରେଷ୍ଠ ! ଏବେ ଆମେ ଯେଉଁସବୁ ହାତୀ ଦେଖୁଛୁ ସେମାନଙ୍କଠାରୁ ଢେର୍ ବଡ଼ ହାତୀ ଦିନେ ଏହି ପୃଥିବୀରେ ଥିଲେ । ସେମାନେ ଆଉ ନାହାନ୍ତି । ବଡ଼ ବଡ଼ ସ୍ଥଳ ଜୀବ କେଉଁ କାରଣରୁ ଲୋପ ପାଇଗଲେ ସେ ବିଷୟରେ ନାନା ପ୍ରକାରର ଅନୁମାନ କରଯାଇଛି ସତ— କିନ୍ତୁ ସଠିକ କାରଣ ଜଣାପଡ଼ନାହିଁ ।

ଜାପ୍ନ ଦେହ ଠିକଏ ସରୁଆ । ସେ ନିଜ ଦେହକୁ ଗୁହିଁ ହସି ହସି ଗଡ଼ିଗଲ ଭଳି ହୋଇଗଲିଣି । "ଆମେ ଏଠାରେ ଯେତେ ପିଲା ଅଛୁ ସମସ୍ତଙ୍କୁ ମିଶାଇଲେ ମଧ୍ୟ ତା ପାସଙ୍ଗରେ ପଡ଼ିବୁ ନାହିଁ"—ବୋଲି ଯେମିତି କହୁଛି, ଅଜି ତା' ଆଡ଼କୁ ଗୁହିଁ ବୁଝାଇଲେ—ଏହି ଛୁଆ କେତେ ଶୀଘ୍ର ଶୀଘ୍ର ବଢ଼େ ଶୁଣ । ତିମି କ୍ଷୀରରେ ଏତେ 'ଚକଣା' ଅଛି ଯେ ତାକୁ କ୍ଷୀର ନ କହି ଘିଅ କହିଲେ ବି ଚଳିବ । ଗାଈକ୍ଷୀର ବା ଆମ ମା'କ୍ଷୀର ତ ତା' ତୁଳନାରେ ପାଣି । ସେଇ କ୍ଷୀର ଖାଇ ଏହି ଅସୁରିଆ ଛୁଆର ଓଜନ ଘଣ୍ଟାକୁ ପାଞ୍ଚ କେଜି ଲେଖାଁ ବଢ଼ିଯାଇଥାଏ । ଦିନ ଶେଷ ହେଲାବେଳକୁ ତା'ଠାରେ ୧୨୦ କେଜି ମାଂସ ହାଡ଼ ଚର୍ବି ଯୋଗ ହୋଇ ଗଲାଣି ! ବଢ଼ି ବଢ଼ି ଯେତେବେଳେ ମା' ସମାନ ହୋଇଯାଏ ସେତେ-ବେଳେ ଯାଇ କ୍ଷୀର ଖୁଆଇବା କାମଟା ମାଆ ବନ୍ଦ କରିଦିଏ ।

## ସେହି ଛୁଆକୁ ତାଲିମ କରେ

ତିମି ତା' ଛୁଆକୁ ପ୍ରଥମେ ତାଲିମ କରେ ପାଣି ଭିତରୁ ଉପରକୁ ଉଠି କେମିତି ନିଶ୍ୱାସ ନେବ । ତାହା ସାଙ୍ଗରେ ସେ ପାଣି ଉପରକୁ ଉଠାଇ ନିଏ । ଫୁସ୍ଫୁସ ଭିତରୁ ନାକବାଟେ ଛୁଆ ଯେତେବେଳେ ପବନ ବାହାର କରିଦିଏ ବାହାରକୁ ଦେଖାଯାଏ ସତେ ଯେପରିକି ସେ ଗୁଡ଼ାଏ ପାଣି ଝରଣାରୁ ବାହାର କଲାଭଳି ଛାଡ଼ିଦେଉଛି । କିନ୍ତୁ ପ୍ରକୃତରେ ତିମି ଦେହ ଭିତରୁ ପାଣି ବାହାର କରି ଉପରକୁ ମୋଟାଡ଼େ ନାହିଁ । ତୁମେ ସବୁ ମାଘ ମାସ ଶୀତଦିନେ ଗୋଟାଏ କଥା ଲକ୍ଷ୍ୟ କରି ଥିବ—ପାଟିରୁ ପବନ ଛାଡ଼ିଦେଲେ ଧୂଆଁ ଭଳି ହୋଇଯାଏ । ଖୁବ୍ ଯଦି ଶୀତ ପଡ଼ୁଛି ନାକରୁ ନିଶ୍ୱାସ ପବନକୁ ବାହାରିଲାବେଳେ ଧୂଆଁ ସୃଷ୍ଟି ହୋଇଯାଏ । ଏଭଳି ହେବାର କାରଣ ହେଲା—ଫୁସ୍ଫୁସ ଭିତରେ ପବନ ଉଷୁମ ହୋଇ ଯାଇଥାଏ । ସେହି ଉଷୁମ ପବନ ଯେତେବେଳେ ଶୀତଦିନର ଥଣ୍ଡା ପବନ ସହିତ ମିଶିଯାଏ ଜଳକଣା ସବୁ ସୃଷ୍ଟି ହୋଇଯାଏ । ତିମି ତ ଅନେକ ସମୟ ଧରି ପାଣି ଭିତରେ ରୁହେ । ଗୁଡ଼ାଏ ପବନ ଫୁସ୍ଫୁସ ଭିତରେ ଏକାବେଳେକେ ଉଷୁମ ହୋଇଥାଏ । ପାଣି ଉପରକୁ ଉଠି ଯେତେ-

ବେଳେ ସେହି ଉଷୁମ ପବନକୁ ସେ ଛାଡ଼େ, ଏତେ ମାତ୍ରାରେ ଜଳକଣା ସୃଷ୍ଟି ହୋଇଯାଏ ଯେ ମନେ ହେବ ସତେ ଯେପରିକି ତିମି ପାଣି ପିଚକାରୀ ମାରୁଛି । ତିମି ନିଶ୍ୱାସ ନିଏ ବୋଲି ଯେତେବେଳେ ଜଣା ନ ଥିଲା ସେତେବେଳେ ଲୋକେ ବିଶ୍ୱାସ କରୁଥିଲେ ଯେ ସେ ତା' ପାଟିରୁ ଏତେ ଉଚ୍ଚକୁ ପାଣି ଫୋପାଡ଼ୁଛି ।

ଗ୍ରେଟ ଛୁଆଗୁଡ଼ିକ ପାଞ୍ଚରୁ ସାତ ମିନଟ୍ ପାଣିତଳେ ରହି ଉପରକୁ ଉଠନ୍ତି । ସେତିକି ସମୟ ଭିତରେ ସେମାନେ ଅଣନିଶ୍ୱାସୀ ହେଲାଭଳି ହୋଇଯାନ୍ତି । କିନ୍ତୁ ବଡ଼ଗୁଡ଼ାକ ତିରିଶ ଚାଳିଶ ମିନିଟରୁ ଆରମ୍ଭ କରି ଘଣ୍ଟାଏ ପର୍ଯ୍ୟନ୍ତ ପାଣି ଭିତରେ ରହିବାର ଦେଖାଯାଏ । ମାଇଲିଏ ତଳକୁ ସମୁଦ୍ର ଭିତରେ ସେ ଚାଲିଯାଇଛି । ସେଠାରେ ଟିକିଏ ଅଣନିଶ୍ୱାସୀ ହେଲାଭଳି ଅନୁଭବ କଲା । ଶୀଘ୍ର ଉପରକୁ ଉଠିବ । ଏଭଳି ବେଗରେ ଖିର ମାରିଲା ଭଳି ଉଠେ ଯେ ତାହା ଦେହଟାଯାକ ସମୟେ ସମୟେ ପାଣି ଉପରକୁ ବାହାରିଆସେ ।

## ତୀରବେଗରେ ଛୁଟେ

ଏତେ ବଡ଼ ଦେହ । କିନ୍ତୁ ପାଣି ଭିତରେ ସେ ଖୁବ୍ ବେଗରେ ପହଁରି ପାରେ । ଘଣ୍ଟାକୁ ପଇଁତିରିଶ ବା ଛପନ କିଲୋମିଟର ବେଗରେ ସେ ଯିବାର ଦେଖାଯାଇଛି ! ଏହିଭଳି ଗୋଟାଏ ଜୀବକୁ ସମୁଦ୍ର ହିଁ ପୋଷାଏ । ଭୂଇଁରେ ଯେଉଁ ଜୀବ ଚାଲୁଛନ୍ତି ସେମାନଙ୍କ ପାଇଁ ଦୁନିଆଟା ଯେମିତି, ପାଣି ଭିତରେ ଯେଉଁମାନେ ଅଛନ୍ତି ସେମାନଙ୍କ ପାଇଁ ସେମିତି ନୁହେଁ । ଆମେ ଆଗକୁ ବା ପଛକୁ ଯିବା—ଉପରକୁ ତ ଉଡ଼ିଯାଇ ପାରିବା ନାହିଁ । ଜଳଜୀବଙ୍କ ପାଇଁ ଉପର ତଳ କଡ଼ପଟ ସବୁଆଡ଼କୁ ଯିବାର ସୁବିଧା ଅଛି । ଏତେ ବଡ଼ ସମୁଦ୍ର ପଡ଼ିଛି । ଚରିଆଡ଼େ ବୁଲି ପେଟପୂରାଇ ଖାଇ ତିମି ତିମିଙ୍ଗିଳ ବଢୁଛନ୍ତି । ସେଥିପାଇଁ କୁହାଯାଏ—ତିମି ତିମିଙ୍ଗିଳ ହେବ ତ ସମୁଦ୍ରକୁ ଯାଅ । ପୋଖରୀ ଗଡ଼ିଆ ବନ୍ଧ ଭିତରେ ରହିଲେ ବଡ଼ ବଡ଼ ରୋହି ଭାକୁର ବାଳିଆ ଶେଉଳି କିଏ ହେବ, ତିମି କିଣ ହୋଇପାରିବ ?



ଏହି ତିମି ମୁହଁରୁ ଗୋଟାଏ ଶିଙ୍ଗ ଭଳି ଲମ୍ବା ହୋଇ ବାହାରିଯାଇଛି ।
ଶାବଳ ଭଳି ବାହାରିଥିବା ଶିଙ୍ଗଟିରେ ଗୋଲେଇ-ଖୋପ ସବୁ ରହିଛି । ପୂର୍ବେ ନାବିକମାନେ
ଏହାକୁ ସାଗରର ଏକଶୃଙ୍ଗୀ ଅଶ୍ୱ ବୋଲି କହୁଥିଲେ । ୧୬ ଫୁଟ ଲମ୍ବ
ଦେହରେ ୯ଫୁଟ ଲମ୍ବର ଶିଙ୍ଗ ରହିଛି ।



ତିମି ଦେହରେ ଏତେ ବଳ ଥିଲେ ମଧ୍ୟ ସମୁଦ୍ର ଭିତରେ ଥିବା ଅଷ୍ଟପଦୀ ବା ଅକ୍ଟୋପସ୍ ସହିତ ତାହାର ସମୟେ ସମୟେ ଭୀଷଣ ଯୁଦ୍ଧ ହୁଏ । ତିମି ତାକୁ ଖାଇଯିବାକୁ ଚେଷ୍ଟା କରେ ଓ ଅକ୍ଟୋପସ୍ ତାହା କବଳରୁ ଖସିଯିବାକୁ ସବୁମତେ ଉଦ୍ୟମ କରେ ।

## ନାନାପ୍ରକାର ଅଛନ୍ତି

ଆକାରରେ ଛୋଟବଡ଼ ନାନାଜାତିର ଡମି ଅଛନ୍ତି । ସେମାନଙ୍କର ପାଟି ମଧ୍ୟ ଭିନ୍ନ ଭିନ୍ନ ପ୍ରକାରର । ଗୋଟିଏ ଜାତିଙ୍କ ପାଟି ଭିତରେ ଗୁଡ଼ାଏ ଥାଳିଆ ତାଳୁରୁ ଝୁଲିଲା ଭଳି ରହିଥାଏ । ବହୁକାଳ ପର୍ଯ୍ୟନ୍ତ ଲୋକେ ତାକୁ ହାଡ଼ ବୋଲି ବିଚାରିଥିଲେ । କିନ୍ତୁ ପରେ ଦେଖିଲେ ଯେ ନଖ ବା ଖୁରା ଯେଉଁଥିରେ ତିଆରି, ଏଗୁଡ଼ିକ ସେହିଭଳି ଚମଡ଼ାରେ ତିଆରି ହୋଇଛନ୍ତି । ବାହାଦୁରୀ ହେଉଛି ଏଗୁଡ଼ିକ ଖୁବ୍ ଟାଣ ହେବା ସଙ୍ଗେ ସଙ୍ଗେ ଏମିତି ନଚକା ଯେ ସହଜରେ ଭାଙ୍ଗିଯିବ ନାହିଁ । ଗୋଟିଏ ବଡ଼ ଡମି ପାଟି ଭିତରେ ଏହିଭଳି ତିନଶହ ଚାରିଶହ ଥାଳିଆ ରହିଥାଏ । ପାଟି ଆଁ କଲାବେଳେ ଏଗୁଡ଼ିକ ଝୁଲିପଡ଼ନ୍ତି ଓ ବନ୍ଦ କରିଦେଲେ ଶୋଇଗଲା ଭଳି ରହିଯାନ୍ତି । ଏମିତି କାହିଁକି କରାଯାଇଛି କହିଲ ?

ଏତେ ବଡ଼ ପାଟିଟାଏ । ଡମି ପହଁରି ଯାଉଛି । ପାଟି ଭିତରକୁ ପାଣି ପଶିଆସୁଛି । ମୁହଁ ବନ୍ଦକରି ଦେଲେ ପାଟି ଦୁ' ପାଖରୁ ପାଣି ବାହାରି ଯାଏ । ସେତେବେଳେ ଏହି "ଥାଳିଆ ଜାଲ"ରେ ବହୁ ପରିମାଣରେ ଛୋଟ ଛୋଟ ଚିଙ୍ଗୁଡ଼ି ଓ ମାଛ ଅଟକିଯାନ୍ତି । ତେଣିକି ସେ ବୁଲାଇଲା ତା ଜିଭ । ଜିଭଟା ସତାଇଶ ଅଠାଇଶ ମହଣ ଓଜନ ହେବ । ସେହି ବିରାଟ ଜିଭକୁ ପାଟି ଭିତରେ ବୁଲାଇ ଚିଙ୍ଗୁଡ଼ି ଓ ମାଛଙ୍କୁ ସେ ଗଳା ପାଖକୁ ଦେଇଦିଏ । ତେଣିକି ଗିଳିଲା ଗିଳିଲା କାମ । ଏହି ଥାଳିଆଗୁଡ଼ିକୁ ବାଲିନ୍ ବୋଲି କୁହାଯାଏ । ବହୁ ପ୍ରକାରରେ ଏହାକୁ କାମରେ ଲଗାନ୍ତି । ଟିକିଏ ନଚକା ଗୁଣ ଥିବାରୁ ଗାଡ଼ି ଚାବୁକ, ବରଫରେ ସ୍ଲେଜ ଗାଡ଼ି, ଛତାକାଠି ଭଳି ଅନେକ ଜିନିଷ ଏଇଥିରେ ହୁଏ । ଏହି ବାଲିନ୍‌ର ବାହାର ପଟଟା ଚିକ୍‌କଣ, ଭିତର ପଟଟା ଚୂଳୁଣି ଭଳି । ଗୋଟାଏ ଗୋଟାଏ ବାଲିନ୍ ବା ଥାଳିଆ ଚାରିମିଟର (୧୩ ଫୁଟ) ପର୍ଯ୍ୟନ୍ତ ଲମ୍ବ ।

## ଲାଙ୍ଗୁଳ ଭଳି ଲାଙ୍ଗୁଳ !

ଡମି ଲାଙ୍ଗୁଳଟା ଖୁବ୍ ବଡ଼ । ସେଇଟା ଡଙ୍ଗାର ହାଉଲି ଓ ସୁକାନ ଉଭୟ କାମ କରେ । ସେଇଟା ସମତଳ ବା ଚଉରସ । ସେ



ଗୋଟିଏ ଜାଗା ଜମି ମାଟିରେ ସତେ ଯେପରିକି "ଦାନ୍ତ ଥାଳିଆ"ର ଗୋଟାଏ ବଡ଼ ସନ୍ତା ତିଆରି କରି ଦିଆଯାଇଛି । ତିନିଶହ ଗୁହିଶହ ଥାଳିଆ ଫାଟି ଆଁ ହେଲାବେଳେ ଫୁଲି ଫଟନ୍ତି ଓ ବନ୍ଦ ହେଲାବେଳେ ଶୋଇଗଲା ଭଳି ହୋଇ ଯାଆନ୍ତି । ସେତିକି ବେଳେ ମାଛ ରହିଯାଆନ୍ତି ମାଟି ଭିତରେ । ଜମିର ଥାଳିଆ ଦାନ୍ତକୁ ବାଲିନ୍ ବୋଲି କୁହାଯାଏ ।

ସମୁଦ୍ର ଭିତରେ ସବୁଠାରୁ ବଡ଼ ଜୀବ ହେଉଛି ତିମି—କିନ୍ତୁ ଦିନେ ତାହାଠାରୁ ବଡ଼ ବଡ଼ ଜୀବ ଥିଲେ ବୋଲି ଅନୁମାନ କରାଯାଉଛି । ସମୁଦ୍ରର ତଳଦେଶରେ କେତେ ଜୀବଙ୍କର ଚଲା—ଚିହ୍ନର ସନ୍ଧାନ ମିଳିଛି । ସେହି ଚିହ୍ନ କହି ଦେଉଛି ସେ ସବୁ ଜୀବ କେତେ ବଡ଼ ବଡ଼ ହୋଇଥିବେ । ସମୁଦ୍ର ତଟାଣରେ ଥିବା ଚିହ୍ନର ଚିତ୍ର ଦେଖ……

ଲାଙ୍ଗୁଳରେ ବଳ ଭରିରହିଛି । ତାକୁହିଁ ଆହୁରି ଭଲ କରି ସେ ପାଣି ଭିତରେ ଏତେ ବେଗରେ ଗ୍ଭଲିପାରୁଛି । ପହଁରିଲା ବେଳେ ଜାତିଏ ତିମି ପ୍ରତି ସେକେଣ୍ଡରେ ଦଶ ଗ୍ଭରି ଥର କରି ଲାଞ୍ଜ ପିଟୁଥିବେ । ପାଣିତଳୁ ଉପରକୁ ଉଠିଲାବେଳେ ଏହି ଲାଙ୍ଗୁଳ ହିଁ ତିମିକୁ ସାହାଯ୍ୟ କରେ ।

## ତିମି ଶିକାର

ବଡ଼ବଡ଼ ତିମି ଦେହରେ ବହୁ ପରିମାଣରେ ଚର୍ବି ଓ ମାଂସ ଥିବାରୁ ମନୁଷ୍ୟ ତାହାର ବଡ଼ ଶତ୍ରୁ ହୋଇଯାଇଛି । ପୃଥିବୀର କେତେକ ଅଂଶର ଲୋକଙ୍କୁ ତିମିମାଂସ ଖାଇବା ସୁଆଦିଆ ଲାଗେ । ତାହାର ଚର୍ବି ନାନା କାମରେ ଲାଗେ । ତେଣୁ ତାକୁ ମାରିବା ପାଇଁ ମନୁଷ୍ୟଜାତି ହଜାର ହଜାର ବର୍ଷ ହେଲା ଚେଷ୍ଟା କରିଆସୁଛି । ପରେ ଯେତେବେଳେ ଜାହାଜ ସବୁ ତିଆରି ହେଲା ତିମି ଶିକାର ସହଜ ହୋଇଗଲା । ତା’ ମାଂସ ପାଇଁ ଯେତେ ନୁହେ, ଚର୍ବି ପାଇଁ ତାକୁ ବେଶୀ ମାରିଲେ । ଗୋଟାଏ ସମୟ ଥିଲା ଯେତେବେଳେ କି ଶହ ଶହ ଜାହାଜରେ ହଜାର ହଜାର ଲୋକ ଭିନ୍ନ ଭିନ୍ନ ମହାସାଗରରେ ବୁଲି ଏହି ଜୀବକୁ ମାରୁଥିଲେ । ପରେ ଯେତେ-ବେଳେ ପେଟ୍ରୋଲିୟମ ବାହାରିଲା ସେଥିରୁ ନାନା ପ୍ରକାରର ଚିକଣା ଚିଜ ତିଆରି ହେଲା । ତିମି ଚର୍ବିରେ ତିଆରି ମହମବତୀ ଆଉ ଦରକାର ହେଲା ନାହିଁ । କଳକାରଖାନାରେ ଭିନ୍ନ ଭିନ୍ନ ପାର୍ଟ୍‌କୁ ଚିକଣ ରଖିବା ପାଇଁ ତିମି ଚର୍ବିର ଆଉ ସେମିତି ଗ୍ଭହିଦା ରହିଲା ନାହିଁ । ତେଣୁ ତିମି ଶିକାର କମିଗଲା । କିନ୍ତୁ ହେଲେ କଣ ହେବ, ସେତେବେଳକୁ ଅନେକ ଜାତି ତିମିଙ୍କର ବଂଶ ଏକରକମ ଲୋପ ହୋଇ ଆସିଲାଣି । ଭିନ୍ନ ଭିନ୍ନ ଦେଶର ଲୋକେ ନିୟମ ବାନ୍ଧିଛନ୍ତି କେଉଁ ଅଞ୍ଚଳରୁ କେତେ ତିମି ମାରିବେ । ତା’ ନ କଲେ ଯେତିକ ଯେତିକ ରହିଯାଇଛନ୍ତି ସେମାନଙ୍କୁ ମାରିଦିଆଯିବ ଓ ଗୋଟାଏ ଗୋଟାଏ ଜାତିର ତିମିଙ୍କ ବଂଶ ଲୋପ ହୋଇଯିବ । ଯେତେ ନିୟମ କଲେ ମଧ୍ୟ ମନୁଷ୍ୟ ତାହା ଲୋଭ ସମ୍ଭାଳି ପାରୁନାହିଁ—ଚୋରି ଚାହାରିକୁ ଯାଇ ଏ ଜୀବକୁ ମାରିଦେଉଛି ।

ତୁମେସବୁ ସିନା ତମି ଜାତି କଥା ଏତେ ବେଳଯାଏ ଶୁଣୁଥିଲ— ଭିନ୍ନ ଭିନ୍ନ ତମିଙ୍କ କଥା ଶୁଣିନାହଁ । ସେମାନଙ୍କ କଥା ଜାଣିଲେ ହୁଏତ କହିବ ଯେ ସେମାନେ ଏକାଜାତିର ନୁହନ୍ତି । କିନ୍ତୁ ପାଣି ବାହାରେ ଆସି ନିଶ୍ୱାସ ନେବା, ଅଣ୍ଡା ନଦେଇ ଛୁଆ ଜନ୍ମ କରିବାରେ ସମସ୍ତେ ସମାନ । ଏଥର ଶୁଣ—

ଗୋଟିକର ନାମ ନୀଳତମି । ଏଇଟି ହେଉଛି ପୃଥିବୀର ସବୁ ଜୀବଙ୍କ ଭିତରେ ବଡ଼ । ଲମ୍ବ ଶହେ ଫୁଟ ବା ତା'ଠାରୁ ଟିକିଏ ଅଧିକ । ଏତେ ବଡ଼ ଜୀବଟାର ଓଜନ ନିଶ୍ଚୟ ଖୁବ୍ ବେଶୀ ହୋଇଥିବ । ଗୋଟିକର ଓଜନ ହେଲି ୧୪୦ ଟନ୍ । ଗୋଟିଏ ଟନ୍ ୨୭ ମହଣରୁ ଟିକିଏ ଅଧିକ; ଏଣିକି ହିସାବ କରି ପକାଅ । ଦେହଟି ଲମ୍ୱାଳିଆ ଓ ସରୁଆ । ମାଛମୁଣ୍ଡ ଭଳି ହେଉଛି ଏହାର ମଥା । ଉପରଟା ଟିକିଏ ଚେପ୍ଟା । ତଳ ମାଡ଼ିଟା ଟିକିଏ ପଦାକୁ ବାହାରିଲି ଭଳି ହୋଇଯାଇଛି । ଗ୍ରୀବା ଗଳା ଓ ତଳମାଡ଼ି ମିଶି ଯେଉଁ ପାଟି ବା ଆଁ ସୃଷ୍ଟିକରିଛନ୍ତି, ତାକୁ ଦେଖିଲେ ତୁମେମାନେ ବିଚାରିବ ଗୋଟିଏ ଶ୍ରେଷ୍ଠ ପୁଷ୍କରିଣୀ କିଏ ଖୋଳିଦେଇଛି କି ! ତା' ଭିତରେ ଏକସମୟରେ କେତେ ପାଣି ରହିଯାଉଥିବ ଅନୁମାନ କର । ଗୋଟିଏ ବଡ଼ ନିକିତି ଯଦି ତିଆରି କରିହୁଅନ୍ତା ଓ ଗୋଟାଏ ପାଖରେ ନୀଳତମିଟିକୁ ପକାଯାଆନ୍ତା, ଆର ପାଖରେ କେଇଟି ହାତୀଙ୍କୁ ରଖିଲେ ନିକିତି ଓଜନ ସମାନ ହୁଅନ୍ତା ଆଗରୁ କହୁଛି । ପୁଣି ମନେପକାଇ ଦେଉଛି—ପଚଶଟି ହାତୀ ସେ ପଟେ ଠିଆ କରାଇଲେ ଯାଇ ଏହାର ସମାନ ହୁଅନ୍ତେ ।

ଏ ବିଷୟରେ ଯେତେ କହିଲେ ବି ପିଲାଙ୍କୁ ନୂଆ ଶୁଭୁଛି ବୋଲି ଲକ୍ଷ୍ୟ କରି ହରିବାବୁ ପଚାରିଲେ—"ଏଇଟି ଦେହରେ କେତେ ବଳ ଥିବ କିଏ କହିପାରିବ ଟିକିଏ ଦେଖିବା ।"

ପିଲାମାନେ କେବଳ ହସିଲେ । "ତୁମମାନଙ୍କର ଏତେ ଶ୍ରେଷ୍ଠ ଶ୍ରେଷ୍ଠ ମୁଣ୍ଡରେ କଣ ଏତେ ବୁଦ୍ଧି ଅଛି ଯେ ଏଡ଼େବଡ଼ କଥାଟିଏ ଅନୁମାନ କରିପାରିବ ?" ବୋଲି କହିଦେଇ ହରିବାବୁ ମଧ୍ୟ ହସିଉଠିଲେ ।

ଅପର୍ଣ୍ଣକୁ ପାଖକୁ ଡାକି କହିଲେ—ଦି'ମାସ ତଳେ ଆମ ପୋଖରୀରୁ ଜାଲରେ ମାଛ ଧରୁଥିଲୁ । ସେଦିନ ଗୋଟାଏ ରୋହି ମାଛ ତୋ ଗାଲରେ କେମିତିକା ଗାଲପଟା ଚଟକଣାଟାଏ ମାରିଦେଲି ତୋର ମନେ ଅଛି ?

ଅପର୍ଣ୍ଣର ସେ କଥା ମନେ ପଡ଼ିଯିବାରୁ ସେ ଏଡ଼େ ଏଡ଼େ ଆଖି କରିଦେଲି ଓ ବା ଗାଲରେ ହାତ ବୁଲେଇଲି । ହରିବାବୁ କହିଚାଲିଲେ—ସେ ଦିନ ମୁଁ ଓ ବାବୁଲି ଜାଲରେ ମାଛ ଧରୁଥିଲେ । ଅପର୍ଣ୍ଣ ଜାଲ ମଝିରେ ରହି ଉପରକୁ ଉଠାଉଥିଲି । ଗୋଟାଏ ଦି'କିଲିଆ ରୋହି ଜାଲ ଭିତରେ ପଡ଼ିଯାଉଛି ଦେଖି ଜୀବନବିକଳରେ ଉପରକୁ ଡ଼ିଆଁ ମାରି ଉଠିଗଲା । ବାଡେଇ ହୋଇଗଲା ତା' ଗାଲରେ । ପାଟି ଭିତରୁ ରକ୍ତ ବାହାରି ପଡ଼ିଲା । ପାଣିରୁ ଉପରକୁ ଡେଇଁଲା ବେଳେ ଦି' କେଜି ଓଜନର ରୋହି ଦେହରେ ଯଦି ଏତିକି ବଳ, ଗୋଟାଏ ତିମି ସମୁଦ୍ରର ମାଇଲାଏ ତଳୁ ଉପରକୁ କେତେ ଜୋରରେ ଉଠୁଥିବ ଅନୁମାନ କର । ତା' ମୁଣ୍ଡ ବାଜିଲେ ଗୋଟାଏ ଛୋଟ ଜାହାଜ ବା ଷ୍ଟିମର ନିଶ୍ଚୟ ଓଲଟିପଡ଼ିବ । ତାହାହିଁ ସମୟ ସମୟରେ ହୁଏ ।

## ଘାତକ ତିମି

ଆଜି ଗୋଟିଏ ତିମି କଥା ଶୁଣିଲେ ତୁମେସବୁ ଡରିଯିବ—ରାତିରେ ତାକୁ ସପନ ଦେଖିଲେ ବୋଧହୁଏ ବିକିବିକେଇବ । ସେଇଥିପାଇଁ ତା' କଥା କହିବାକୁ ମନ ହେଉନାହିଁ । ତଥାପି କହୁଛି—

ତାକୁ ନାଁ ଦିଆଯାଇଛି ଘାତକ । ନୀଳତିମି ତୁଳନାରେ ସେଇଟି ଛୋଟ—ଲମ୍ବ କେବଳ ତିରିଶ ଫୁଟ । କିନ୍ତୁ ତା' ବୁଦ୍ଧି ବଳ ଓ ପାଣିରେ ପହଁରିବା ଗତି—ଏମିତି ମିଶିଯାଇଛନ୍ତି ଯେ, ତାକୁ ସତେ ଯେପରି କି ସାଗରର ମାଲିକ କରି ଛାଡ଼ିଦେଇଛନ୍ତି । ପୃଥିବୀରେ ବାଘ, ସିଂହ, ଭାଲୁ ଯେତେ ପ୍ରକାରର ହିଂସ୍ରଜନ୍ତୁ ଅଛନ୍ତି—କେହି ତା' ପାସଙ୍ଗରେ ପଡ଼ିବେ ନାହିଁ । ଦେହରେ ଅତିମାତ୍ରାରେ ବଳ ଥିବାରୁ ମେରୁ ଅଞ୍ଚଳରେ ତିନି ଫୁଟ ବହଳର ବରଫକୁ ଫୁଟାଇ ସେ ଉପରକୁ ଉଠିଆସିପାରେ । ଆସିଲାବେଳକୁ



ଏହାର ନାମ ଘାତକ !
ପୃଥିବୀର ସବୁଠାରୁ ବଳ ହିଂସ୍ର ଜୀବ !

ଦେଖାଯାଏ ଯେ ବରଫକୁ ପଚଶ ଫୁଟ ଓସାରର ଗୋଲାଇକରି ଫଟାଇ ଦେଇଛି । କାହାକୁ ତାହାର ଡର ନାହିଁ । ଶୃଙ୍ଖଳାବଦ୍ଧକୁ ଶୃଙ୍ଖଳବେଳେ ସେ ସତେ ଯେପରିକି କହୁଥାଏ—"ଦେଖଇ ନେଇ ଯାହା ଚଉଦିଗର, ସେ ସବୁର ଅଟଇ ମୁଁ ଅଧୀଶ୍ୱର" ସବୁ ସମୁଦ୍ରରେ ସେ ବୁଲେ । ତା' ସହିତ ସମୁଦ୍ର ଭିତରେ ବାଜି ମାରିବା ପାଇଁ କୌଣସି ଜୀବ ଜନ୍ମ ହୋଇନାହିଁ । ପାଟି ଭିତରେ ଦଶରୁ ଚଉଦ ଯୋଡ଼ା ଖିଷଣ ଖିଷଣ ଦାନ୍ତ । ମାଛ, ସିଲ୍, ସ୍ପେର୍ଟଡିମି, ଡଲଫିନ, ପରପସ୍ୱେଜ, ୱାଲରସ, ଅକ୍ଟୋପସ—ଯାହା ପାଇଲା ଖାଇଲା । ଝଙ୍କାଏ ଝଙ୍କାଏ ମାଛ ଏକା ବଖତକେ ଖାଇଯାଏ । ଗୋଟିଏ ଘାତକ ତିମିକୁ ଥରେ ମାରିଦିଆଗଲା । ତାହା ପେଟରୁ ଚଉଦଟା ସିଲ ଓ ତେରଟା ପରପ୍ୱେଜ ବା ଶିଶୁକ ବାହାରିଥିଲେ । ସତକରେ ମଟର ଗ୍ଳଲା ଭଳି ପାଣି ଭିତରେ ସେ ପହଁରିଯାଏ—ଘଣ୍ଟାକୁ ପଇଁତିରିଶ ମାଇଲ ବେଗରେ । ସିଲର ଲମ୍ବ ହେଉଛି ଦଶଫୁଟ । ମଝି ଗୋଲେଇ ଛ' ସାତ ଫୁଟ, ଓଜନ ପ୍ରାୟ ପାଞ୍ଚଶହ କେଜି । ଘାତକ ତିମି ତାହାର ତିନି ଇଞ୍ଚିଆ ଦାନ୍ତକୁ ତା' ଦେହରେ ଭର୍ତ୍ତିକରି ଦେଇ ଖେଳଣା ଭଳି ଟାଣି ନେଇଥାଏ । ନୀଳତିମି କେତେ ବଡ଼ ଶୁଣିଛ । ତାକୁ ମଧ୍ୟ ଏହି ଘାତକ ସହଜରେ ମାରିଦିଏ । ତାକୁ ଦେଖିଦେଲା ମାତ୍ରେ ନୀଳତିମି ଏମିତି ଡରିଯାଏ ଯେ ପେଟଟାକୁ ଉପରକୁ କରିଦେଇ ଜୀବନର ଆଶା ଛାଡ଼ିଦେଇ ଭାସେ । ଘାତକ ଯାଇ ତା'ର ଜିଭଟାକୁ ଖାଇଦିଏ । ସେତିକରେ ତା' ପେଟ ପୂରିଯାଏ—ନୀଳତିମି ମରି ଭାସୁଥାଏ ।

## ମନୁଷ୍ୟ ପକ୍ଷରେ ଅସମ୍ଭବ ନୁହେଁ

ଏହିସବୁ କଥା ଶୁଣି ପିଲାମାନଙ୍କୁ ସତରେ ଡରମାଡ଼ିଲାଣି । ଅଜା ସେମାନଙ୍କ ଡର ଭାଙ୍ଗି ଦେବାପାଇଁ କହିଲେ—ଆମ ଦେଶ ସମୁଦ୍ର କୂଳରେ ଏମାନେ ନାହାନ୍ତି; ତେଣୁ ଡରିବାର କଥା ନାହିଁ । ଥିଲେ ମଧ୍ୟ ଆମେ ପରା ହେଉଛୁ ମଣିଷ ଜାତି । ଆମ ବୁଦ୍ଧି ଆଗରେ ହାର ମାନି ନଯିବ ଏମିତି କିଏ ଭଲା ଅଛି ? ହଜାର ହଜାର ବର୍ଷ ଆମ ପୂର୍ବପୁରୁଷ ମଣିଷ ଯେତେବେଳେ ଲଙ୍ଗଳା ହୋଇ ବୁଲୁଥିଲେ ବାଘଟାକୁ ଦେଖିଲେ, ସିଂହକୁ ଭେଟିଗଲେ ଘୁନିଆରେ ଥରି ଥରି ପଡ଼ୁଥିଲେ । ତାହାରି ବଂଶଧର ଆମେ

କିନ୍ତୁ ଆଜ ଆମେ ବଣର ହିଂସ୍ରଜନ୍ତୁ ବାଘ ସିଂହଙ୍କୁ ଆଣି ପୋଷାମନାଉଛୁ— ସର୍କସରେ ଖେଳାଇ ପଇସା ରୋଜଗାର କରୁଛୁ । ସେମିତି ମଣିଷ ବରାବର ବଗ୍ଭରିଲ ଗୋଟାଏ ଘାତକ ତିମିକୁ ଧରି ଆଣି ପୋଷିଲ ଭଳି ରଖନ୍ତା । ପାଣିଘେର ବା ଆକ୍ୱାରିୟମ କରାଗଲା । ଗୋଟିଏ ଘାତକ ତିମିକୁ ଅତି କୌଶଳରେ ଧରିଆଣି ତାହାର ଭିତରେ ଛାଡ଼ିଦିଆଗଲା । ଏଇଟି ହେଉଛି ଅଳ୍ପ ଦିନତଳର କଥା—ଊଣେଇଶଶହ ଚଉଷଠି ମସିହାରେ । ତାଙ୍କୁ ଗୋଟିଏ ଶ୍ରଦ୍ଧା ନାଁ ଦିଆଗଲା—ମବ୍ଡକ୍ । ଦେଖାଗଲା ଯେ ମଣିଷକୁ ଆଘାତ କରିବା ଦିଗରେ ତାହାର ମନ ନାହିଁ । ସେ ପାଣିଘେର ଭିତରେ ଖେଳୁଛି । ଜଣେ ଲୋକ ସାହସ ବାନ୍ଧି ସେହି ଘେର ଭିତରେ ପଶିଗଲା । ମନୁଷ୍ୟ ହାତରୁ ସେ ମାଛ ଖାଇଲା । ତା' ପେଟ କୁଣ୍ଢାଇଦେଲେ ତାକୁ ଭଲଲାଗିଲା ।

ଏତିକ ଶୁଣିଲାରୁ ପିଲାଏ ହସିଲେ । ଘାତକ ତିମି ଯେତେ ଭୀଷଣ ଯେତେ ବଳୁଆ ହେଉ ପଛକେ ମଣିଷକୁ ବେଶୀ କାଳ ଡରାଇ ରଖିପାରିବ ନାହିଁ ବୋଲି ସେମାନଙ୍କର ବିଶ୍ୱାସ ହୋଇଗଲା ।

ସେ ପିଲାମାନଙ୍କୁ ପୁଣି ଶୁଣାଇଲେ—ଗ୍ଭେଟ ବଡ ଯେଉଁ ସବୁଖିଆ ପଚସ୍ତରୀ ଜାତିର ତିମି ଅଛନ୍ତି, ସେମାନଙ୍କ ଭିତରୁ ଆଉ ଗୋଟିଏ ଜାତିଙ୍କ କଥା ଶୁଣ ।

ତା ନାଁ ହେଉଛି ସ୍ପର୍ମ ବା ମେଣ୍ଢାମୁଣ୍ଡିଆ । ଲମ୍ବାଟା ଷାଠିଏ ଫୁଟ । ଅଟେଣ୍ଟଲଶ ଇଞ୍ଚରେ ଗୋଟିଏ ମିଟର—ହିସାବ କରିପକା ସେଇଟି କେତେ ବଡ଼ । ଓଜନ ପଚିଶ ଟନ୍ । ଗୋଟିକୁ ମାରି କାଟିଦେଲେ ପାଞ୍ଚ-ଟନିଆ ଦଶଟି ଟ୍ରକ୍ ଦରକାର ହେବ ବହିନେବା ପାଇଁ । ଦେହର ତିନିଭାଗରୁ ଭାଗେ କେବଳ ମୁଣ୍ଡଟି । ଏଡ଼ିକ ବଡ଼ ମୁଣ୍ଡ ଥିବାରୁ ନାମ ପାଇଛି 'ମେଣ୍ଢାମୁଣ୍ଡିଆ' । ତିରିଶରୁ ଷାଠିଏଟି ଦାନ୍ତ । ବିରାଟ କପାଳ ପଛପଟେ ଗୋଟାଏ ଖାଲୁଆ ଭଣ୍ଡାର ରହିଛି । ସେଇଥିରେ ଗୋଟାଏ ପ୍ରକାରର ତେଲ ଥାଏ । ତାକୁ ବସାଇ ଦେଲେ ମହମ ଭଳି ପଦାର୍ଥ ବାହାରେ । ସେଇଥିରେ ମହମବତୀ ତିଆରି ହେଉଥିଲା । ମଲମରେ ମଧ୍ୟ ତାକୁ ଲଗାଯାଉଥିଲା । ତାହାର ଅନ୍ତ ଭିତରେ ଝୁଣା ଜାତୀୟ ଗୋଟାଏ ପଦାର୍ଥ ମିଳେ । ମଲା ତିମିର ଅନ୍ତରୁ ବାହାରି ଏହା ସମୁଦ୍ର ପାଣିରେ ଭାସୁଥାଏ ବା



ଏଇଟି ସ୍ପର୍ମ ବା ମେଣ୍ଢାମୁଣ୍ଡିଆ—
ଗୋଟିକୁ ମାରି କାଟିଦେଲେ ପାଞ୍ଚଟନିଆ
ଦଶଟି ଟ୍ରକ୍ ଦରକାର ହେବ ବୋହିନେବା ପାଇଁ ।

କେଉଁଠି କେଉଁଠି ଲଗି ରହିଯାଇଥାଏ । ସେଥିରୁ ବେଶ୍ ସୁଗନ୍ଧି ବାହାରେ । ସେହି ସୁଗନ୍ଧିତ ଅମ୍ବର ଗ୍ରିସ୍‌କୁ କାମରେ ଲଗାଯାଏ ସ୍ନୋ, ପାଉଡର ଭଳି ସୁଗନ୍ଧି ଦ୍ରବ୍ୟ ତିଆରି କଲାବେଳେ । ଗୋଟାଏ ବିଶେଷ ପ୍ରକାରର ବାସନା ବାହାରୁ ଥିବାରୁ ଦାମ୍ ବେଶୀ । ଏବେ ନାନା ପ୍ରକାରର କୃତ୍ରିମ ସୁଗନ୍ଧି କୋଇଲି ପ୍ରଭୃତିରୁ ବାହାରିଲେ ମଧ୍ୟ ଏହି ଚିଜର ଚାହିଦା ପୂର୍ବଭଳି ରହିଛି ।

## ରାଇଟ୍ ରାଇଟ୍ ରାଇଟ୍

ଭଗବାନଙ୍କୁ କେତେଦିନ ହେଲା ସମସ୍ତେ 'ରାଇଟ୍ ରାଇଟ୍' ବୋଲି ଚିହ୍ନାନ୍ତି । ତାଙ୍କୁ ଖଣ୍ଡେ ପାଞ୍ଚଟଙ୍କିଆ ନୋଟ୍ ଧରାଇ ଦେଇ ତା' ଅଜା ଦୋକାନକୁ ସଉଦା ପାଇଁ ପଠାଇଥିଲେ । ଗୋଟିଏ ତାଲିକା ଦେଇଥିଲେ । ବାଟରେ ସେ ତାଲିକାଟି ଧରି ଗୋଟି ଗୋଟିକର କଲମରେ ଚିହ୍ନ ଦେଉଥାଏ ଓ କହୁଥାଏ 'ରାଇଟ୍' ଅର୍ଥାତ୍ ଠିକ୍ । ଏମିତି କିଛିବାଟ ଯାଇ ତାଲିକା ମିଳା ଶେଷହେଲା ବେଳକୁ ପାଞ୍ଚଟଙ୍କିଆ ନୋଟ୍‌ଟି ହାତରୁ ଖସିପଡି ସାରିଥିଲା । ପବନରେ ଉଡିଯାଇଛି—ଆଉ ମିଳିଲା ନାହିଁ । ହରି ଅଜା କହିଲେ ଗୋଟିକୁ 'ରାଇଟ୍ ତିମି' ନାଁ ଦିଆଯାଇଛି । ଅନେକ ବର୍ଷ ତଳେ ତିମି ଶିକାର ସହଜ ନଥିଲା । ତାଙ୍କ ପଛେ ପଛେ ଡଙ୍ଗାରେ ବା ବୋଟରେ ଧାଇଁ ପାଖ ଧରିବା ଭାରି କଷ୍ଟ ହେଉଥାଏ । କିନ୍ତୁ ଗୋଟିଏ ଜାତିର ବଡ ତିମିଙ୍କୁ ମାରିବା ସହଜ ହୋଇଥାଏ । ସେଗୁଡିକ ବେଶ୍ ଲମ୍ବା ସତ—କିନ୍ତୁ ଏମିତି ମୋଟାଳିଆ ଯେ, ପାଣିଭିତରେ ଖିର ମାରିଲାଭଳି ପହଁରି ପାରନ୍ତି ନାହିଁ । ଘଣ୍ଟାକୁ କେବଳ ପାଞ୍ଚ ଛ'ମାଇଲ ଗତି । ମଣିଷ ଦଉଡିବାଠାରୁ କମ୍ । ଶିକାର ପାଇଁ ଠିକ୍ ବା ରାଇଟ୍ ହୋଇଥିବାରୁ ତା' ନାଁ ସେମିତି ଦେଇଥିଲେ । ଦେହରେ ଗୁଡାଏ ଚରବି ସାଙ୍ଗକୁ ପାଟି ଭିତରେ ତିରିଶ ମହଣ ଓଜନର ବାଲିନ୍ ବା ହାଡଫାଳିଆ ଦାନ୍ତ ।

## ଡେଣାତିମିର ଭୋଜନ

ଅଶୀ ଫୁଟ ଲମ୍ବର ଗୋଟିଏ ଜାତିକୁ ଡେଣାତିମି ବୋଲି ନାମ ଦିଆଯାଉଛି । ସମୁଦ୍ର ଚୁଙ୍ଗୁଡି ହେଉଛି ଏହାର ପ୍ରଧାନ ଖାଦ୍ୟ । ସାଉଥ୍

ମାଛଙ୍କୁ ମଧ୍ୟ ଶହ ଶହ ସଂଖ୍ୟାରେ ଗିଳଯାଏ । ଲକ୍ଷ ଲକ୍ଷ ଚୁଙ୍ଗୁଡ଼ି ସାଙ୍ଗକୁ ଶହ ଶହ ସାଡ଼ିନ୍ ମାଛ ହେଲେ ଯାଇ ଏହାର ପେଟ ପୂରିବ । ଏତେ ବଡ଼ ଗଣ୍ଡିକୁ ଏତିକି ଖାଦ୍ୟ ନ ହେଲେ ଚଳନ୍ତା କେମିତି ?

ଗୋଟାଏ କଥା ଶୁଣାଯାଇଥିଲା । ସବୁଠାରୁ ବଡ଼ ତ ହେଉଛି ନୀଳତିମି । ସେ କିନ୍ତୁ କୌଣସି ବଡ଼ ଜୀବଙ୍କୁ ଖାଏ ନାହିଁ । ନିଲ ବୋଲି ଗୋଟିଏ ଜାତିର ଶ୍ରେଷ୍ଠ ଶ୍ରେଷ୍ଠ ଚୁଙ୍ଗୁଡ଼ି ହେଉଛି ଏହାର ଖାଦ୍ୟ । ଚାରି ହଜାର କେଜି. ମିଳିଗଲେ ତାହାର ଦିନକର କ୍ଷୁଧା ମେଣ୍ଟିଯାଏ ।

## ସବୁ କିଛି ବଡ଼

ଏତେବେଳଯାଏ ପିଲାମାନେ କେବଳ ବଡ଼ ଜୀବ, ବଡ଼ ପାଟି, ବଡ଼ ଦାନ୍ତ, ବଡ଼ ଦେହ, ବଡ଼ ଜିଭ କଥା ଶୁଣିଆସୁଛନ୍ତି । ଶେଷକୁ ହରିବାବୁ କହିଲେ—ମୋର ଶେଷ ଗପଟିରେ ଖାଲି ବଡ଼ଙ୍କ କଥା କାହିଁକି କହିଲି ବୁଝିପାରୁଛ ? ବଡ଼ କଥା ଶୁଣିଲେ ବଡ଼ ହେବାକୁ ମନ ହୁଏ । ସେଇଥିପାଇଁ ଆମେ ସମସ୍ତେ ବରାବର ଜାଣିବାକୁ ଇଚ୍ଛା କରୁ କେଉଁ ପର୍ବତ ସବୁଠାରୁ ଉଚ୍ଚ, କେଉଁ ନଦୀ ସବୁଠାରୁ ଲମ୍ବା, କେଉଁ ଉଡ଼ାଜାହାଜ ସବୁଠାରୁ ଅଧିକ ବେଗରେ ଉଡ଼େ । ଏମିତିକି ଆମ ଏଇଠି ଯେଉଁ ନନ୍ଦବାବୁ ବସିଛନ୍ତି ସେ କେତେ ବେଶୀ ଖାଇପାରନ୍ତି ସେହି ବିଷୟରେ ଆଲୋଚନା ହୁଏ । ଆମ ମନ ବଡ଼ ହେବ ବୋଲି ଓଡ଼ିଶାର ତୀର୍ଥକ୍ଷେତ୍ର ପୁରୀରେ ସବୁକିଛି ବଡ଼ ବୋଲି ବରାବର ମନେପକାଇ ଦିଆଯାଏ । ବଡ଼ଠାକୁର ବଡ଼ଦେଉଳରେ ଅଛନ୍ତି । ସେ ବଡ଼ଦାଣ୍ଡରେ ବଡ଼ ରଥରେ ବିଜେ ହୁଅନ୍ତି ।

ଆଚ୍ଛା ଦେଖିବା, ତୁମମାନଙ୍କ ଭିତରୁ କିଏ କେତେ ବଡ଼ ବଡ଼ କାମ ସବୁ କରିବ ଦେଶର ନାଆଁ ରଖିବ ।

ଏତିକିବେଳେ ଦୂରରୁ ଶୁଭିଲା—"ଡେରିକଲେ ସବୁ ଥଣ୍ଡା ହୋଇଯିବ । ପତର ପକା ।" ନନ୍ଦବାବୁ ଗୋଟାଏ ବଡ଼ ପାଟିକରି କହିପକାଇଲେ—ସମସ୍ତେ ଜଲଦି ଉଠ । ବଡ଼ ବଡ଼ କାକରା ଛଣା ହୋଇଛି ବୋଲି ମୁଁ ଦେଖିଆସିଛି ।

